କବି [illegible] ଦାସଙ୍କ ରଚିତ

# ଯମ ପୁରାଣ ।

ବା

## ଦ୍ୱିଜାତ୍ମ ଗୀତା ।



ଶ୍ରୀ ଅନନ୍ତ କୁମାର ଘୋଷଙ୍କଦ୍ୱାରା
ପ୍ରଥମବାର
ପ୍ରକାଶିତ ।




Printed by A. K. Ghosh
at Sree Haranath Press
Bakhrabad.
Cuttack.
1930

ମୂଲ୍ୟ ୦/ ।          ଚାରିଅଣା ମାତ୍ର ।

# ଦ୍ୱିତୀୟ ଗୀତା

ବା

# ଯମପୁରାଣ ।

—⊹⊹—

## ପ୍ରଥମ ଅଧ୍ୟାୟ ।

ନମଇ ପ୍ରଭୁ ନାରାୟଣ । ଭୂଦେବ ହର୍ଷର କାରଣ ॥
ନୀଳଜଳଦ ପ୍ରାୟ କାୟେ । ମୁଖ ସୁଧାକରପ୍ରାୟେ ॥
ସୁପଙ୍କଜାସାପଦ୍ମ ନେତ୍ର । ସୁରଙ୍ଗ ଅଧର ପବିତ୍ର ॥
କଣ୍ଠେ କୌସ୍ତୁଭ ମଣିହାର । ଭୂଷଣ ନାନା ଅଳଙ୍କାର ॥
ଚନ୍ଦନେ ଚର୍ଚ୍ଚକରନ୍ଥି । ଓଢ଼କଛି ଉତ୍ତରୀହିତେ ବାନ୍ଧି ॥
ଶଭୁଜେ ବାହୁଟି କଙ୍କଣ । ପୀତବସନ ପରିଧାନ ॥
ପଦ୍ମରେ ବାଜେଣି ନୂପୁର । ତେଜ ଶୋଭଇ ଦିନକର ॥
ସେପାଦ ପଦ୍ମକୁ ମୋ ଆଶ । ଶରଣ ପଶିଣ କୃଷ୍ଣଦାସ ॥
ନମସ୍ତେ ପରଂବ୍ରହ୍ମ ରୂପୀ । ସକଳରୂପେ ଅଛ ବ୍ୟାପି ॥
ସୃଷ୍ଟି ଯାହାର ଖେଳଘର । ଅଶେଷ ମହିମା ତୋହର ॥
ଚଞ୍ଚଳାଦେବୀ ପ୍ରାଣପତି । ତୋଠାରୁ ନାହିଁ ଅନ୍ୟଗତି ॥
ତେଣୁ ମୁଁ ପଶୁଅଛି ତୋତେ । କରୁଣାକର ଦେବ ମୋତେ ॥
ପ୍ରସନ୍ନଚିତ୍ତେ ଆଜ୍ଞାଦେଇ । ସଂସାରେ କୀର୍ତ୍ତିମାନ ରହୁ ॥
ଶୁଣ ହେ ବନ୍ଧୁଜନମାନେ । ମୋଦୋଷ ନ ଧରିବ ମନେ ॥
ପ୍ରଥମ ଗୀତା ସମ୍ପୂର୍ଣ୍ଣିଲ । ଦ୍ୱିତୀୟ ଗୀତାଉଦେ ହେଲ ॥
ଅର୍ଜ୍ଜୁନ ଦ୍ୱାରକାରେ ଥାଇ । ବୋଲଇ କୃଷ୍ଣମୁଖ ଚାହିଁ ॥

ଅର୍ଜୁନ ଉବାଚ ।

ହେ ପ୍ରଭୁ କମଳାର ବର । ମୋତେ କରିବ ପ୍ରତିକାର ॥

ମୁଁ ମୂଢ଼ ଭବକୁପେ ପଡ଼ି । ପାପପଙ୍କରେ ଅଛି ଜଡ଼ି ॥
ଏଥୁ ଉଦ୍ଧର ନାଥ ମୋତେ । ଶରଣ ତୋର ପାଦଗତେ ॥
ଗୀତାର୍ଥେ ଶୁଣିଲି ଯେତେକ । ଖଣ୍ଡିଲା ସକଳ ପାତକ ॥
କର୍ମର ଚେଷ୍ଟାକୁ ଶୁଣିଲି । ଅଜ୍ଞାନ କଷ୍ଟ ନ ଜାଣିଲି ॥
ଦ୍ୱିତୀୟ ଗୀତା ଏବେ କହ । ମନରୁ ଫେଡ଼ ମୋ ସନ୍ଦେହ ॥
ଏମନ୍ତେ ଯୋଡ଼ି କର ବେନି । କୃଷ୍ଣଙ୍କୁ କରଇ ଦଇନ ॥
ଅର୍ଜୁନ ମନ ପ୍ରଭୁ ଜାଣି । ହସି ବୋଲନ୍ତି ଚକ୍ରପାଣି ॥

ଶ୍ରୀ ଭଗବାନୁବାଚ ।

ହେ ପାର୍ଥ ସାବଧାନେ ଶୁଣ । ତୋତେ କହିବି ଷଡ଼୍‌ଗୁଣ ।୨୫।
ଶୁଣିଲୁ କର୍ମର ଅବସ୍ଥା । ଏବେ କହିବା କ୍ରୋଧ କଥା ॥
ଏ ପୃଥ୍ୱୀମଧ୍ୟେ ଯେତେଲୋକ । ନ ଜାଣନ୍ତି ଏହି ଦୁଃଖଶୋକ ॥
କେ ଅବା ପିତାମାତା ମାରି । ପର ଦୁହିତା ପୁତ୍ରନାରୀ ॥
ଇଷ୍ଟ କୁଟୁମ୍ବ ବନ୍ଧୁ ଭାଇ । କେ ଅବା ପ୍ରାଣେ ବଧ ହୋଇ ॥
ତାହାଙ୍କ ନିମିତ୍ତେ ଆପଣେ । କ୍ରୋଧ କରନ୍ତି ଅନୁକ୍ଷଣେ ॥
ଘୂଟଇ ବଳ ଏହି ଆୟୁଷ । ସେହି ହୁଅନ୍ତି ପାପେ ନାଶ ॥
ମୋହର ମାୟା ମୋହେ ପଡ଼ି । କ୍ରୋଧ କେ ପାରବଟି ଛାଡ଼ି ॥
କେବଳ ଲୋକ ଅଗ୍ରଜକୁ । ସକଳ ଭବ ମନକୁ ॥
ନିମିତ୍ତେ କରିବ ରୋଦନ । ଆଜ୍ଞ ନ କର ଖେଦ ମନ ॥
ଆମ୍ଭେ ଯେ ତ୍ରେତୟା ଯୁଗରେ । ଜନ୍ମିଲୁଁ ଦଶରଥ ଘରେ ॥
ଅସୁର ମାରିବା ନିମନ୍ତେ । ଭ୍ରମିଲୁଁ ଅଗମ୍ୟ ବନସ୍ତେ ॥
ଆମ୍ଭଙ୍କୁ ନ ଦେଖିଣ ପିତା । ଅନବସ୍ଥିତେ କଲେ ଚିନ୍ତା ॥
ରୋଦନ ଷଡ଼ଧନ କଲେ । ଏହ ଶୁଣି ପ୍ରାଣତ୍ୟାଗ କଲେ ॥
ସଂସାରେ ଯେତେତେକ ମନୁଷ୍ୟ । କ୍ରୁଦ୍ଧି ଲାଗି ଯାନ୍ତି ନାଶ ॥
ଯାହା ମେ ବୋଲୁ ପଥ ମୋର । ଏ ସବୁ ବିଦ୍ୟୁତ ପ୍ରକାର ॥
ମିଛିକୁ ଭୁଲିଣ ମରଇ । ଆପଣେ ତରି ନ ପାରଇ ॥

ଏଣୁ ପଣ୍ଡିତ ଜନମାନେ । ଶୋଚନା ନ କରନ୍ତି ମନେ ॥
ଗ୍ରହ କ୍ଷେତ୍ର ମୃତ ଜନ ପାଇଁ । ଭକତି ମାର୍ଗେ ଯେ ଯାଆନ୍ତି ॥
ଯେ ଏତେଗୁଣ ପରତ୍ୟାଗୀ । ତାକୁଟି ବୋଲି ପ୍ରେମ ଯୋଗୀ ॥
ସେ ପ୍ରାଣୀ ଚଳନ୍ତେ ଦାତା । ମୋହର ଅଟେ ସେ ପିତା ॥
ଯେବେ ଭଜନ୍ତି ଭବବାର । ଅନ୍ତେ ବସନ୍ତି ସ୍ୱର୍ଗପୁର ॥
ନୋହିଲେ ଗୃହଧର୍ମେ ଥାଇ । ମୋର ଚରଣ ଚିନ୍ତୁଥାଇ ॥
ଆପଣା ହଦବୃତ୍ତି କର । ସେ ଏକା ପାପ ନ ଆଚର ॥
ଦୁଃଖ ସୁଖ ଅଟେ ଯେତେ ଥିବ । ସ୍ୱଧର୍ମ ଅନୁକ୍ରମେ ଦେବ ॥
ଅତିଥିଙ୍କୁ ଦେଖିଲେ ମୋହର । ତାହାକୁ ନମନ୍ତେ ହେବ ଦୂର ॥
ସାଧୁଜନଙ୍କେ ଥିବ ଖଟି । କେବେହେଁ ନୋହିବ କପଟୀ ॥
ଅଡହିଁ ନୋହିବ ଦାରୁଣ । ଏତେବେଳେ ପାଇବ କାରଣ ॥
ଥିଲେ ନ କରିବ ନିରାଶ । ନଥିଲେ ନ ଲାଗଇ ଦୋଷ ॥
ସେ ପ୍ରାଣୀ ସଂସାରୁ ତରଇ । ଘୋର ନରକେ ନ ପଡଇ ॥
ଦେଖ ହେ ଗୃହଧର୍ମେ ଥାଇ । ଭାବେ କୃଷ୍ଣଦାସ ବାଇ ॥
ଅର୍ଜୁନ କହୁଛି ନରବର । ମୋ ନାମ ହୃଦପଦ୍ମେ ଧର ॥
ଏ ମନ୍ତେ କର ତୁ ଭଜନ । ଦେଖିବୁ ମୋର ଯାଦବ ଲୀଳା ॥
ଅର୍ଜୁନ ସନ୍ତୋଷ ହୋଇଲା । ଅଣଷାଠୀ ପାଦେ ରହିଲା ॥
ସୁଖେ ନେ ହରିନାମ ଘୋଷ । ଭାବେ ଭଣଇ କୃଷ୍ଣଦାସ ॥

ଇତି ଶ୍ରୀ ଦ୍ୱିତୀୟ ଗୀତା ରଚେ ମହାପୁରାଣେ ହରିଅର୍ଜୁନ ସମ୍ବାଦେ
ସୌଖ୍ୟଅବସ୍ଥା କଥନେ ନାମ ପ୍ରଥମୋଽଧ୍ୟାୟଃ ।

---

## ✽ ଦ୍ୱିତୀୟ ଅଧ୍ୟାୟ ✽

### ଅର୍ଜୁନ ଉବାଚ ।

ଅର୍ଜୁନ ଯୋଡ଼ି ବେନିକର । ବୋଲଇ ଶୁଣ ଦାମୋଦର ॥
ତୁମ୍ଭେ ଯେବଣ ଅଜ୍ଞାଦେଲ । ମୋ ନାମ ଭଜ ତୁ ବୋଇଲ ॥

ବୋଲଇ ଦେହଧାରୀ ଯେତେ । ଥୋକାଏ କହିଗଲେ ମୋତେ ॥
କେ ଅବା ମର୍ତ୍ତ୍ୟେ ଜାତ ହୋଇ । କି ଅବା କର୍ମେ ଦୁଃଖପାଇ ॥
ଦାରିଦ୍ର ହୋଇ ଯେତେ ଜନ । ନମିଳେ ଅନ୍ନ ବସ୍ତ୍ର ଧନ ॥
କୁଟୁମ୍ବ ନ ପାରଇ ପୋଷି । ବହି ଭ୍ରମଇ ଦାତା ନାଶି ॥
କୁଳଲକ୍ଷ ପ୍ରାଣେ ମନ । ଭ୍ରମି ହୁଅଇ ଛନ୍ନ ଛନ୍ନ ॥
ଖରନିଃଶ୍ୱାସ ଛାଡ଼ୁଥାଇ । ବୋଲଇ କି କରିବି ମୁହିଁ ॥
ଉଦର ପୋଷିବା ନିମନ୍ତେ । ତେଣୁଟି ଭ୍ରମନ୍ତି ଜଗତେ ॥
ପରକୁ କହେ କୁଟ ଛନ୍ଦ । କରନ୍ତେ ଅର୍ଜ୍ଜିଲ ସମ୍ପଦ ॥
ସମ୍ପଦ ହୁଅଇ ପ୍ରାପତ । ବିଷାଦ ହୁଏ ତାର ଚିତ୍ତ ॥
ସେହୁ କରିବ କେଉଁ ସେବା । ଭୋଳାନାଥ ସଂକ୍ଷେପେ କହିବା ॥

ଶ୍ରୀ ଭଗବାନୁବାଚ ।

ଅର୍ଜୁନ ମୁଖୁଁ ଏହା ଶୁଣି । ହସି ବୋଲନ୍ତି ପଦ୍ମପାଣି ॥
ଶୁଣ ଅର୍ଜୁନ ଏକଚିତ୍ତେ । ତୁ ଯାହା ପଚାରିଲୁ ମୋତେ ॥
ମୋହର ଯେତେକ ଭକତ । ତାହାଙ୍କ ଦୁଃଖ ଅପ୍ରମିତ ॥
ସୁଖ ଲଭନ୍ତି ଯେତେ ନର । ହୁଅନ୍ତି ଅତି ଗର୍ବେଶ୍ୱର ॥
ନାନା ଭୋଗରେ ମାତିଥାଇ । କରନ୍ତି ଗୀତେ ନାଟକୋଇ ॥
ଯେବେ ଶଙ୍କର ଧାତା କୃତ । ମୋପାଦେ ନଥାନ୍ତି ଚିତ୍ତ ॥
ସମ୍ପଦେ ମତ୍ତ ଭୋଳ ହୋଇ । ସେ ମୋତେ ଅତି ନ ଲୋଡ଼ଇ ॥
ପୂର୍ବେ ହିରଣ୍ୟ ଦୈତ୍ୟ ଥିଲା । ଜାଣୁନ କେତେ କୃତ୍ୟ କଲା ॥
ସେବା କରଇ ଶିବ ପ୍ରୀତ୍ୟେ । ମୋତେ ମଣିଲା ଶତ୍ରୁ ପ୍ରାୟେ ॥
ତାହାର ପୁତ୍ର ଯେ ପ୍ରହ୍ଲାଦ । ମନରେ ହୋଇଲା ବିଷାଦ ॥
ମୁକତିମାର୍ଗେ କରି ଇଚ୍ଛା । ବିଦ୍ୟାଗୁରୁଙ୍କୁ କଲା ପୃଚ୍ଛା ॥
ଭୋ ଗୁରୁ ମୋତେ କୃପାକର । ଏହିତ ଅନିତ୍ୟ ସଂସାର ॥
ଅବଶ୍ୟ ହରିବା ଦେହ । ମୁକତି କାହୁଁ ଅଛି କହ ॥
କାହାକୁ ସେବିଲେ ତରିବା । ଏ କଥା ସଂକ୍ଷେପ କହିବା ॥

ଗୁରୁ ବୋଇଲେ ଶୁଣ ତାରୁ । ତୋ ଆଗେ କହିବାକୁ ସବୁ ॥
ଯେ ଅବା ଶିବାଙ୍କୁ ସେବଇ । ସେ ପ୍ରାଣୀ ଯମଙ୍କ ନ ଭଜ ॥
ବିଷ୍ଣୁ ଚରଣେ ଆଶ୍ରେ କଲେ । ଏ ଭବୁଁ ତରିଯାନ୍ତି ଭଲେ ॥
ତା ବିନୁ ନାହିଁ ସଦଗତି । ଶୁଣି କୁମର ତୋଷମତି ॥
ସେବିଲି ମୋହର ଚରଣେ । ମୋ ନାମ ଲୋଡ଼ିବ ଅନୁକ୍ଷଣେ ॥
ପିତା ତାହାର ପୁଚ୍ଛା କଲା । କିପାଠ ପଢ଼ିଲୁ ବୋଇଲା ॥
ତାତ ବଚନ ଶୁଣି ପୁତ୍ର । ପଢ଼ିଲି ବିଷ୍ଣୁର ଚରିତ୍ର ॥
ଶୁଣି ପିଅର କୋପ କଲା । ଏ ପାଠ ଗୁରୁ କି ବୋଇଲା ॥
ବିଷ୍ଣୁ ଯେ ଅମ୍ଭର ବଇରୀ । ତାହାଙ୍କ ନାମ କିମ୍ପା ଧର ॥
ଏବେ ତୁ ମୋର ବୋଲ କର । ଈଶ୍ୱର ପାଦେ ସେବା କର ॥
ମଣ୍ଡରେ ଯେତେ ଯେତେ ରାଜା । ପାଇବୁ ସର୍ବଜନଙ୍କ ପୂଜା ॥
ପୁତ୍ର ବୋଇଲା ଶୁଣ ବାପ । ବିଷ୍ଣୁ ସେବିଲେ ଯାଇ ପାପ ॥
ବିଷ୍ଣୁ ସେବିଲେ ଧର୍ମ ଥାଇ । ବିଷ୍ଣୁ ପ୍ରସାଦେ ସ୍ୱର୍ଗ ଯାଇ ॥
ବିଷ୍ଣୁ ଯେ ବ୍ରହ୍ମାଣ୍ଡ କରତା । ଆଉ ଏ ଯେତେକ ଦେବ । ॥
ସମସ୍ତେ ବିଷ୍ଣୁଙ୍କୁ ସେବନ୍ତି । ତୁ ମୋତେ କରୁଅଛୁ ନାସ୍ତି ॥
ଶୁଣି ହିରଣ୍ୟ ମହାବଳୀ । କୋପେଣ ଉଠିଲା ପ୍ରଜ୍ୱଳି ॥
ତେବେ ବୋଇଲା ନୃପବର । ରେ ଦୁଷ୍ଟ ଅଜ୍ଞାନ ପାମର ॥
ଈଶ୍ୱର ଦେବତାଙ୍କୁ ନିନ୍ଦ । ବିଷ୍ଣୁଙ୍କୁ ବଡ କରି ବନ୍ଦ ॥
ନ କଲୁ ମୋହର ବଚନ । ମୁ ତୋର ଘେନିବି ଜୀବନ ॥
ଏମନ ବୋଲି ଦ ଧମଣି । ପୁତ୍ରକୁ ପକାଇଲା ହାଣି ॥
ତକ୍ଷଣେ ଖଡ୍ଗ ଚଳିଗଲା । ନନ ଭୁବନେ-ବିଚିତ୍ର କଲା ॥
ଭକ୍ତର ବଧ ଅଟେ ଜାଣି । ବଜ୍ରପ୍ରୁ କଲ୍ ଚକ୍ରପାଣି ॥
ଭକ୍ତକୁ ଜୀଆଇଣ ଦେଲେ । ଘରକୁ ଯାଅ ସା ବୋଲିଲେ ॥
ଶୁଣି କୁମର ଗଲା ଚଳି । ପିତା ସନ୍ନିଧେ ଯାଇ ମିଳି ॥
ପୁତ୍ରକୁ ଦେଖିଣ ଦଇତ । ମନରେ ~~ହୋଇଲା~~ ଚକିତ ॥

ପୂର୍ବେ ହେଁ କର ବଡ଼ ରୋଷ । ଭୋଜନ ବେଳେ ହେଲା ବିଷ ॥
ବିଷ ଭକ୍ଷିଣ ବୀରମଣି । ଅଜ୍ଞାନେ ପଡ଼ିଲା ଧରଣୀ ॥
ତହୁଁ ସେ ପ୍ରାଣ ହରାଇଲା । ଦେଖି ଜନନୀ ଶୋକ କଲା ॥
ତା ଧ୍ୱା ଜାଣିଣ ଅମ୍ଭେ ଗଲୁଁ । ମନ୍ତ୍ର ପଢ଼ିଣ ଜୀଆଇଲୁ ॥
ଏମନ୍ତେ ଯେତେ ଦିନ ଗଲା । ବଳନ ମନେ ବିଗ୍ରହିଲା ॥
ଏବେ ମୁଁ କି ବୁଦ୍ଧି କରିବି । ପୁତ୍ରକୁ କେମନ୍ତେ ମାରିବି ॥
ମାରିଲେ ପୁଣିହେଁ ବଞ୍ଚିବ । ହତ୍ର ହୋଇଲା ତାକୁ ପନ୍ଥ ॥
ଏମନ୍ତ ବୋଲି ମନେ ପାଞ୍ଚି । ଶୟନ ବେଳେ ଖଣ୍ଡ କରିଛି ॥
କୁଟିଲା ଭୂଲା ପ୍ରାଏ କରି । ଫିଙ୍ଗିଣ ଦେଲା ଦଣ୍ଡଧାରୀ ॥
ସେ ମାଂସ ଭୂମିରେ ପଡ଼ନ୍ତେ । ଡାକଇ ରଖ ନାରାୟଣ ॥
ଅତଙ୍କ ନାଶନ ତୋ ନାମ । ଅତଙ୍କ କାଳେ ହେଲ ସ୍ନେହା ॥
ମନରେ ହୋଇଲା ହରଷ । ସେଠାରେ ହୋଇଲୁ ପ୍ରବେଶ ॥
ସେ ମାଂସ ଖଣ୍ଡ କଲୁଁ ସବୁ । ବୋଇଲୁଁ ଉଠି ବସ ବାବୁ ॥
ଅମ୍ଭର ଆଜ୍ଞା ପ୍ରମାଣରେ । ଜୀଇ ଉଠିଲା ସେ ସତ୍ୱରେ ॥
ମୋ ପାଦେ ନମସ୍କାର କରି । ବାହୁଡ଼ି ଚଳି ନିଜ ପୁରୀ ॥
ଦେଖିଣ ବୋଇଲା ଜନକ । ତୁ ମୃଡ଼ ବଡ଼ିକ ନିର୍ଲ୍ଲଜ୍ଜ ॥
ପୁଣିହେଁ ବଞ୍ଚିଲୁ କେମନ୍ତେ । ପ୍ରହାର କରି ଗଜଦନ୍ତେ ॥
ସମୁଦ୍ରେ ଭସାଇଣ ଦେଲା । କ୍ଷୁଧାନ୍ତର ରାଘବ ଗିଳିଲା ॥
ରାଘବ ଉଦର ଅମ୍ଭେ ଚିରି । ଭୃତ୍ୟକୁ ଆଣିଲୁ ଉଦ୍ଧରି ॥
ଧନେନ୍ଦ୍ର ସେ ପ୍ରହ୍ଲାଦ ବୀର । ପ୍ରଭୁକୁ ଜପି ଅନ୍ଧକାର ॥
ଚାପ ପଢ଼ଇ ବେଳୁଢରେ । ହିରଣ୍ୟ ମିଳିଲା ସେଠାରେ ॥
ଖଡ଼ଗ ଧରି ପାଶେ ହୋଇ । ଦେଖି କୁମର କଲା ଲକ୍ଷ୍ୟ ॥
ଘଡ଼ିଣ ବୋଇଲା ରାକ୍ଷସ । ତୁ ପର ଅଟୁ ମୋର ଶିଷ୍ୟ ॥
ଈଶ୍ୱର ସେବା ପାଶୋରିଲୁ । ହରି ଚରଣେ ଚିତ୍ତ ଦେଲୁ ॥
ଆଜ କାଟିବି ତୋହର ଶିର । ପାରିଲେ ରଖୁ ଗଦାଧର ॥

ଏମନ୍ତେ ଶୁଣିଣ ନନ୍ଦନ । ପଥୀକର କହଇ ବଚନ ॥

ଜଗତର ମହିମା ନ ଜାଣୁ । ଅନ୍ୟ ବନ୍ଦନା ଧ୍ରୁବ ନ ଶୁଣୁ ॥

ଭକତ ବତ୍ସଳ ସ୍ୱଭାବ । ଅଛନ୍ତି ସବୁ ଘଟେ ପୂର୍ବ ॥

ଏହି ସ୍ତୁତିକୁ ଦେଲେ ମନ । ସ୍ତମ୍ଭେ ଅଛନ୍ତି ଭଗବାନ ॥

ତା ବଚନ ନାହିଁ ମୋ ଦେହ ସାହା । ଶୁଣି କମ୍ପିଲା ନରନାହା ॥

ଓଷ୍ଠ କାମୋଡ଼ି କୋପ ଚିତ୍ତେ । ସ୍ତମ୍ଭ ମାଇଲା ଲେଉ ହାତେ ॥

ସେ ନାଥ ବାଳ କୋପ କରି । ନୃସିଂହ ମୂର୍ତ୍ତି ଆତ୍ମ ଧରି ॥

ସ୍ତମ୍ଭରୁ ବାହାରିଲେ ଖଣ୍ଡାର । ନୃସିଂହ ମୂର୍ତ୍ତି ଭୟଙ୍କର ॥

ମାଡ଼ି ଆସିଲେ ହିରଣ୍ୟକୁ । ନଖେ ଚିରିଲେ ପାତରୁକୁ ॥

ମାଡ଼ ବସିଲେ ଚଳେ ଆସି । ଭୟରେ କମ୍ପିଲା ଧରଣୀ ॥

ଦେବତାମାନେ ଭୟ କଲେ । ସ୍ୱର୍ଗରୁ ଓହ୍ଲାଇ ଅଇଲେ ॥

ଲକ୍ଷ୍ମୀ ମୋର କୋଳେ ଦେଇ । ବହୁତ କହିଲେ ବିନୟୀ ॥

ତେବେ ହୋଇଲା ମନଶାନ୍ତି । ଛାଡ଼ିଲେ ସ୍ୱର୍ଗ ଲୋକ ଭ୍ରାନ୍ତି ॥

ପୁଣ ସେ ହିରଣ୍ୟକ ପୁତ୍ର । ପାଳିଲେ ଏକାଦଶୀ ବ୍ରତ ॥

ସେବାରେ ତୋଷିଲେ ଅମ୍ଭଙ୍କୁ । ସ୍ୱର୍ଗରେ ଇନ୍ଦ୍ର କଲୁ ତାଙ୍କୁ ॥

ଦେଖିଲ ସ୍ୱରପଟ୍ଟ ପଣେ । ଦେବେ ଶ୍ରେଷ୍ଠ ଅନୁଷ୍ଠାନେ ॥

ଦ୍ୱିପୂଜ ସମ୍ପତ୍ତି ପାଇଣ । ସେବେ ମୋତେ ଦେଲା ପାଷୋରଣ ॥

ଗଲୁ ଯେ କାନ୍ତିଧନ ଅନ୍ତେ । ସେ ପୁଣ ନଚିହ୍ନିଲା ମୋତେ ॥

ଦଣ୍ଡା ଖେଳନ୍ତି ଭାର୍ଯ୍ୟା ସଙ୍ଗେ । ନାଚନ୍ତି ଗୀତ ନୃତ୍ୟ ରଙ୍ଗେ ॥

ଉଚ୍ଚ ହୋଇଲୁ ଦେଖ ସେଠି । ଲୀନ କଣ୍ଠ ଥିଲୁ ବାହୁଡ଼ି ॥

ବାରତା ପାଇ ଦଣ୍ଡଧାରୀ । ମନେ ବହୁତ ବିଜ୍ଞା କରି ॥

ଛାଡ଼ିଲା ସ୍ୱର୍ଗର ମୁହାସ । ଅସି ମେଳିଲା ମୋର ପାଶ ॥

ବୋଲଇ ଯୋଡ଼ି ଦେବକର । ମାଗିବା ପଥ ଏକ କର ॥

ସମ୍ପଦ ମଦର ପ୍ରମାନ । ଯେ ପାଦେ ନ ରହିଲା ମନ ॥

ତୁମ୍ଭର ଯେତେକ ଭକତ । ଦୁଃଖି ହୋଇବେ ଜଗନ୍ନାଥ ॥

ବୋଇଲେ ଅସୁ ଦେଉ ବାଣୀ । ଶୁଣ ସାତଙ୍କ ଚୂଡ଼ାମଣି ॥
ତେଣୁ ହୋଇତ ମୋର ଦୁଃଖୀ । କେବଳ ଧର୍ମମାନ୍ୟ ସାକ୍ଷୀ ॥
ସମ୍ପଦ ମହତ୍ତ୍ୱ ପ୍ରଧାନ । ଅର୍ଜୁନ ହେଉ କର ମନ ॥
ଯେ ଅବା ମୋ ଭ୍ରବେ ରସଇ । ସେ ପ୍ରାଣୀ ଜାଣେ ମୁଁ ବସଇ ॥
ଯମଦଣ୍ଡରୁ ହୋଏ ପାର । ସେ ପ୍ରାଣୀ ସଂସାରରେ ସାର ॥
ଅର୍ଜୁନେ କହେ ଜଗନ୍ନାଥ । ଭଣଇ ଦାସ କୃଷ୍ଣଭକ୍ତ ॥
ପଦ୍ମପାଦକୁ ମୋର ଆଶ । ବାନ୍ଧ କରିବେ ପୀତବାସ ॥
ଦଶାନ୍ତରର ବଚପଦ । ଶ୍ରୀମୁଖେ କହିଲେ ଗୋବିନ୍ଦ ॥
ଯେ ଅବା ପଢ଼ନ୍ତି ଶୁଣନ୍ତି । ଅନ୍ତେ ଲଭନ୍ତି ସ୍ୱର୍ଗଗତି ॥

ଇତି ଶ୍ରୀ ବୃନ୍ଦାବନ୍ ଗୀତାକଳ୍ପେ ମହାପୁରାଣେ ହରି ଅର୍ଜୁନ ସମ୍ବାଦେ
ପ୍ରହ୍ଲାଦ ଚରିତ କଥନେ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

ତୃତୀୟ ଅଧ୍ୟାୟ ।

ଅର୍ଜୁନ ଉବାଚ ।

ଅର୍ଜୁନ ପୁଣି ପଚାରଇ । କୃଷ୍ଣ ଚରଣେ ମନ ଦେଇ ॥
ବୋଲଇ ଶୁଣ ନାରାୟଣ । ପ୍ରାଣୀଙ୍କି ବାନ୍ଧିତ ଲକ୍ଷଣ ॥
ଜାତ ହୋଇଲେ ଦେହ ବନ୍ଧ । ମାୟାର ପଡ଼ି ଭ୍ରମ ହୋଇ ॥
ଜୀବତେ ଦୁଃଖ ସୁଖେ ମଜ୍ଜି । ତୋ ନାମ ନ ପାଆନ୍ତି ଭଜି ॥
ମଲେ ଦଣ୍ଡଇ ରାଜା ଯମ । ପୋଡ଼ୁ ଏ ମନୁଷ୍ୟ ଜନମ ॥
ଯମ ହୃଦରେ ଦୟା ନାହିଁ । ଏ ଯେତେ ପଚାରଇ ମୁହିଁ ॥
ଯମ ପୁରକୁ ଚଳାଇବ । ଆଜି ଦେଖିଲ କେତେ ମାନ ॥
ଗରୁଡ଼ଧ୍ୱଜ ଅଣିଲ ହଳ । ଯମ ଦଣ୍ଡଇଛନ୍ତି କେତେ ବାଳ ॥
କେଉଁଅନ୍ତେ ଯମର ମୃତତ । କହ ହେ ପ୍ରଭୁ ଶିରୀପତି ॥
ଶୁଣି ବୋଲନ୍ତି ଚକ୍ରବାହା । ଅର୍ଜୁନ ପଚାରିଲୁ ଯାହା ॥
ତହିଁ ଦେଖିଲୁ ଅମ୍ଭେ ଯେତେ । କହିଲେ ନ ସରିବ ପରତେ ॥

ଶୁଣିଲେ ଦେବାଙ୍ଗନା କାହ୍ନର । ଆମ୍ଭେ ଯେ ଗଲୁ ଯମପୁର ॥
ରାମଙ୍କୁ ସଙ୍ଗେ କରି ନେଇ । ଗଲୁ ମୁଁ ବାମନ ଉତ୍ପଥି ॥
ପ୍ରଥମେ ଲବଣନଦୀ ପାଣି । ସେଠାରୁ ଗଲୁଁ ଆମ୍ଭେ ଜାଣି ॥
ଗମନ କରି କରି ପଥେ । ପାପୀ ଦେଖିଲୁ ଅପ୍ରମିତେ ॥
ଦୂଅନ୍ତି ଠାବେ ଠାବେ ଦଣ୍ଡ । ମାଂସ କାଟନ୍ତି ଖଣ୍ଡ ଖଣ୍ଡ ॥
ଯେ ମୋତେ ନମ୍ରେ ନ ଦେଖିଲା । ସେ ପ୍ରାଣୀ ନର୍କରେ ଗଳଣ ॥
ଯେ ଅବା ନ ଦେଖିଲେ ମୋତେ । ସେ ଅବା ତରିବେ କେମନ୍ତେ ॥
ଅନେକ ଦୂର ଜାଣିଗଲୁଁ । ଅନ୍ଧାର ପୁରେକ ଦେଖିଲୁଁ ॥
ସେ ପୁର ମହାଭୟଙ୍କର । ତକ୍ଷଣେ ହୋଇଲୁଁ ବାହାର ॥
ଅତିଦୁର୍ଗନ୍ଧ ଯେଉଁ ବାଟେ । ପ୍ରାଣୀଙ୍କି ପଡ଼ଇ ସଂକଟେ ॥
ପାଦ ଶ୍ରମରେ ଫୁଟୁକର । ନାରଦ ମୁନିଙ୍କି ସୁମର ॥
ଯେବେ ଜାଣିଲେ ବ୍ରହ୍ମଶିଷ୍ୟ । ଆସି ମିଳିଲେ ମୋର ପାଶ ॥
ଆମ୍ଭେ ବୋଇଲୁଁ ମୁନି ଯାଅ । ବଳରାମଙ୍କ ଆଗେ କହ ॥
ରାମ ଅଛନ୍ତି ସଙ୍କଟରେ । ବେଗେ ମୁନି ଯାଅ ଧାଉଁକରେ ॥
ବୋଲିବ ଧାଇଁ ନାରେ ଯାଅ । ଗୁରୁଙ୍କୁ ସେନା କର ଥାଅ ॥
ଶ୍ରୀକୃଷ୍ଣ ଗଲେ ଯମପୁର । ଆଣିବେ ଗୁରୁଙ୍କ କୁମର ॥
ଏମନ୍ତ ବୋଲି ତାଙ୍କୁ କହି । ରାମଙ୍କୁ ଦଅ ବାହୁଡ଼ାଇ ॥
ଆଣିବ ମହାଘୋର ପଥ । ନେବେ ସେ ଯିବା ଏହୁ ପଥ ॥
ଆମ୍ଭର ଆଜ୍ଞା ପାଇକରି । ଗଲେ ନାରଦ ବ୍ରହ୍ମଋଷି ॥
ରାମଙ୍କୁ କହିଲେ ତେମନ୍ତ । ଏଣେ ଚଳେ ନନ୍ଦିଘୋଷ ରଥ ॥
ସ୍ୱର୍ଗୁଁ ଆଇଲେ ତପୋବନ୍ତ । ଅଗସ୍ତ୍ୟ ଦୁର୍ବାସା ସହିତ ॥
ବ୍ୟାସ ମାର୍କଣ୍ଡ ଜନକ । ସନତ୍କୁମାର ସଙ୍ଗ ॥
ବଡ଼େ ନାରଦ ମହାମୁନି । ସମସ୍ତ ଋଷିଗଣ ଘେନି ॥
ବଳଙ୍କ ସହିତ ଆଇଲେ । ଯେ ଯାହା ଭାରତ ପାଇଲେ ॥
ଆସି ମିଳିଲେ ମୋର ପାଶ । ବିଜୟ କଲୁଁ ନନ୍ଦିଘୋଷେ ॥

ମୃତ ହେଲେ ପ୍ରେତଯୋଗେ । ନାନା ଦୁଃଖ କଥା ରଙ୍ଗେ ॥
ସ୍ୱତଃ ଖେଦ ନିରନ୍ତରେ । ପଡ଼ଇ ସଂଯମନୀ ପୁରେ ॥
ଚିତ୍ରଗୁପ୍ତ ମନ୍ତ୍ରୀ ଥିଲେ । ସେ ମୋର ରଥ ନ ଛୁଇଁଲେ ॥
ଚରଣେ କରନ୍ତି ଗମନ । କହନ୍ତି ସର୍ବେ କଥାମାନ ॥
ତାହାଙ୍କ ରଥ ତାହାଙ୍କରେ । କ୍ଷଣକେ କିଛି ପୁଣି ଗଲି ॥
ଥୋକାଏ ଦୂର ଗଲୁ ଚାଲି । ଉମାକନ୍ଦ୍ରୀ ପାଇଲି ॥
ତହିଁ ଦେଖିଲୁ ଆମ୍ଭେ ଯାହା । ସେଠା ଆଗେ କହୁଅଛୁ ତାହା ॥
ଜଳୁଛି ପ୍ରଚଣ୍ଡ ଅନଳ । ନିର୍ଧୂମ ତେଜ ବିଶାଳ ॥
ତେଜ ଲାଗିଣ ବୃକ୍ଷଲତେ । ରହୁ ନ ପାରେ ଚାରିପାଖେ ॥
ଜଳନ୍ତ ଲକ୍ଷେ ତାଳ ଉଚ୍ଚ । ନାହିଁ ସ୍ୱର୍ଗ ପାତାଳ ମଧ୍ୟେ ॥
କେବଣଠାରେ ଜନଗଣେ । ଘୃତ ଢାଳନ୍ତି ଅନୁକ୍ଷଣ ॥
ସେ ଅଗ୍ନି ଉପରେ ମାନବ । ପଡ଼ିଅଛନ୍ତି ଯେବେ ସର୍ବ ॥
ଆକୁଳେ ହୋଇ ଛଟପଟେ । ଗୃହୁଁ ଅଛନ୍ତି ମଟ ମଟ ॥
ପଡ଼ନ୍ତି ଉଠନ୍ତି ଟଳନ୍ତି । ବିକଟେ ବୋବାଳି ପାଡନ୍ତି ॥
ତାହାଙ୍କ ରଖ ଦେଖି ବାବୁ । ଏଡ଼େ ଦଣ୍ଡ ଘୁଞ୍ଚାଅ ପ୍ରଭୁ ॥
କରଯୋଡ଼ି ଦେବ ପାଶେ । ବନ୍ଦନ ହୋଇଣ ବିଶେଷେ ॥
ଆମ୍ଭେ ନେତ୍ରକର୍ଣ୍ଣ ନିଧିଦୋଷ । ମିଳିଲୁ ଅଗ୍ନି କୁଣ୍ଡ ପାଶ ॥
ଅଗ୍ନି ନିଭିଲା ଠି ହୁଙ୍କାରଣୀ । ଶୁଭଇ ମନ୍ଦ ମନ୍ଦ ଧ୍ୱନି ॥
ଯେତେ ପାତକୀ ପଡ଼ିଥିଲେ । ସମସ୍ତେ ବାହାର ହୋଇଲେ ॥
ଦେଖିଣ ମୋହର ପ୍ରସନ୍ନ । ନିସ୍ତରି ଗଲେ ପାପୀମାନ ॥
ତହିଁରେ ବୈକୁଣ୍ଠେ ବସିଲେ । ସୁଖେ ଅମୃତ ଭୋଗ କଲେ ॥
ଶୁଣ ହେ ପାଣ୍ଡୁର ନନ୍ଦନ । ମୋହର ମହିମା ଏସନ ॥
ଅର୍ଜୁନ ଯୋଡ଼ି ହସ୍ତ କର । ବୋଲନ୍ତି ରଖ ଦେବବର ॥
କେବଣ ପାପ କରିଥିଲେ । ପଡ଼ନ୍ତି ଅଗ୍ନିକୁଣ୍ଡେ ମଲେ ॥
ଏ କଥା ଜାଣିବା କେମନ୍ତେ । ସନ୍ଦେହ ହୋଇ କହ ମୋତେ ॥

ଶ୍ରୀ ଭଗବାନୁବାଚ ।

ବୋଲନ୍ତି ମଧୁସୂଦନ । ଶୁଣ ଯାହା ପୁଚ୍ଛିଲୁ ଅର୍ଜୁନ ॥
ପ୍ରାଣୀ ଯେ ମର୍ତ୍ତ୍ୟପୁରେ ଥାନ୍ତି । ଥୋକେ ପାପକୁ ନ ଡରନ୍ତି ॥
ଯେ ଅବା କ୍ଷୁଧା ତୃଷା ଯାଇ । ଏକାଦଶୀରେ ଅନ୍ନ ଖାଇ ॥
ଯେ ଅବା ଅମୂର୍ଚ୍ଛିତ ପ୍ରାଣୀ । ହିଂସନ୍ତି ଅଥବା ବ୍ରାହ୍ମଣୀ ॥
ପରକୁ ଆଣି ଦେବା ଦ୍ରବ୍ୟ । ଯେ ଅବା ତାହାକୁ ଗ୍ରହିବ ।
ଯେ ଅବା ଶ୍ରୀଗୁରୁ ନିନ୍ଦଇ । ବସ୍ତ୍ରଯେ ଜଳରେ ପକାଇ ॥
ପ୍ରାଣୀଙ୍କି କରେ ହୃଦେ ହିଂସା । ଯୋଡ଼ି ଦେଇ ପର ବସା ॥
ଯୁବତୀ ବ୍ରହ୍ମଘାତୀ ହୋଇ । ସେ ଯେବେ ପୁରୁଷ କୁ ଅଇ ॥
ଯେ ଅବା ଭୂମି ବିକ୍ରୀବନ୍ତି । ଯେ ନାରୀ ଗର୍ଭ ବିନାଶନ୍ତି ॥
ସେହି ଯେ ଥିଲା ଭଜନ । ଏ କଥା ହୋଇବ କେଉଁ ଅନ ॥
ଯେ ଅବା ମନେ କରେ ଦୋଷ । ଅର୍ଜୁନ ବ୍ରହ୍ମହତ୍ୟା ଦୋଷ ॥
ଯେ ଅବା ଗୋହତ୍ୟା କରଇ । ସ୍ତ୍ରୀଙ୍କ ପ୍ରାଣ ସଂହାରଇ ॥
ଏମାନଙ୍କୁ [illegible] । ଏ ପ୍ରାଣୀ ଯେ ଦଣ୍ଡ ଲଭନ୍ତି ॥
ଶୁଣ ଅର୍ଜୁନ ଏକଚିତ୍ତେ । ତୁ ଯାହା ପଚାରିଲୁ ମୋତେ ॥
ଏଥି [illegible] ଧର୍ମବାଣୀ ଦାନେ । ମୋ ବିନା ନାହିଁ ଅନ୍ୟଜନେ ॥

ଇତି ଶ୍ରୀ ବିଷ୍ଣୁ ଗୀତା କୃଷ୍ଣ ଅର୍ଜୁନ ସମ୍ବାଦ ଅଗ୍ନିକୁଣ୍ଡ
ବର୍ଣ୍ଣନେ ନାମ ତୃତୀୟୋଽଧ୍ୟାୟଃ ।



ଚତୁର୍ଥ ଅଧ୍ୟାୟଃ ।

ଶ୍ରୀ ଭଗବାନୁବାଚ ।

କହନ୍ତି ପ୍ରଭୁ ବନମାଳୀ । ମୋଠାରୁ ଶୁଣ ଆମ୍ଭେ ଚଳି ॥
ମନ୍ତ୍ରୀ ଯେ ଆମ୍ଭ ପାଖେ ଥିଲେ । କେମନ୍ତେ ବଡ କୋପ କଲେ ॥
ରଥ ଚଳାଇ ଅତି ବେଗେ । ଯାଇଁ ମିଳିଲେ ଏକସ୍ଥଳେ ॥
ସେ ପୁର ମହିମା ଏମନ୍ତ । କରୁଛି ଅପ୍ରମେୟ ଶୀତ ॥

ଶିଶିର ପଡ଼େ ଛତ ଛତ୍ର । ଦ୍ରୁମ ବାହାର ଖରତର ॥
କାକର ନୁକ ପାବକ ସନ୍ନ । ପଦ୍ମ ନୁଅଇ ନଥା କାହିଁ ॥
ତହିଁ ନେ ଭାହୁବ ନମ ଷେ । ତା ବଷ ହୁଳବ ବଟଶଷେ ॥
ତୋର ଶପଥ ବାନ୍ଧ ମୋତେ । ମୋ ତନୁ କମ୍ପି ଏକା ଶୀତେ ॥
ଆଜ୍ଞା କ ଅନ୍ୟ ଗୁରୁ ଜୀବ । କେ ଅବା ଏ ଦୁଃଖ ସହିବ ॥
ଏଠାରେ ଜନପଦ ନାହିଁ । ଅସ୍ଥିର ହୋଇଲଟି ମୁହିଁ ॥
କର୍ଣ୍ଣେ କି ମୁନିଙ୍କର ବାକ୍ୟ । ସମସ୍ତେ ହୋଇଲେ ଚକିତ ॥
ଦଲ୍ଭୀଙ୍କ ବୋଲନ୍ତେ ବଚନ । ଏହା ଯେ କେବଣ ଭୁବନ ॥
ଏ ପୁର ନାମ କହ କହ । ଶୀତେ କମ୍ପିଲା ଆମ୍ଭ ଦେହ ॥
ଏତ ଗ୍ରୀଷ୍ମ ଋତୁ କାଳ । ଶରୀରୁ ବହୁଅଛି ଝାଳ ॥
ଏଥିରେ ପ୍ରବେଶ ହୁଅନ୍ତେ । ଦେହ କମ୍ପିଲା ଅଦଭୁତେ ॥
କହ ଏଠାକର ବିଧାନ । ଶୁଣିଲେ ପ୍ରତେ ଯିବ ମନ ॥
କର ଯୋଡ଼ିଣ ମନ୍ତ୍ରୀ କହେ । ଭୋ ପ୍ରଭୁ ଯମପୁର ଏହି ॥
ଏହାର ନାମ ହିମପୁର । ପ୍ରାଣୀଙ୍କି ପଡ଼ଇ ଦୁସ୍ତର ॥
ପ୍ରାଣୀ ଯେ ଥାନ୍ତି ଦେବତଳେ । ମୃତ୍ୟୁ ଲଭନ୍ତି ଯେତେବେଳେ ॥
ଅଣାନ୍ତି ଯମର ଦୂତରେ । ଆନନ୍ଦେ ଭକ୍ତ ରବିତଳେ ॥
ହିମ ଲାଗିଣ ତାର ଦେହ । ମାଂସ ଭକ୍ଷଇ ସେ ନେଇ ॥
ଦେଖନ୍ତୁ ବେଳ କରି ହିମ । ଏଠାରେ ପଡ଼ିଛି ଏ ଧାମ ॥
ଥୋକାଏ ଦେଖ ଭଟି ବଗି । ଦୁର୍ଜନ୍କୁ ବଚନ ବଣାସି ॥
ଯନ୍ତ୍ରଣେ ନ ପାରେ ... । ବଟକନ୍ଦହିଁ ନେଉଥାନ୍ତି ପେଲି ॥
ଶୀତେ କମ୍ପଇ ଅରଣ୍ୟର । ଶୀତଳ ବହଇ ସମୀର ॥
ବୋଲାଇ ଶୁଣିମା ଗୋସାଇଁ । ଏହା ନରଣ ଅଛି କାହିଁ ॥
ଝରିଲେ ମେଲଣ ବସାଅ । ଯେ ଦଣ୍ଡ ଇଚ୍ଛା ତାହା ଦିଅ ॥
ନୋହିଲେ ଏମନ୍ତ ନକର । ଅଗ୍ନି କୁଣ୍ଡରେ ନେଇ ଭର ॥
ଶୁଣି ହସନ୍ତି ଦୂତମାନେ । ଏଠାରେ ରଖନ୍ତି ଯତନେ ॥

ଯତନେ ହେମକୁମ୍ଭ ଆଣି । ଉପରେ ଡିମ୍ବ ଥାନ୍ତି ପାଣି ॥
ବହନ୍ତି ବହଣା ବହୁତ । ମାଡ଼ ମାରନ୍ତି ଅପ୍ରମିତ ॥
ଅପାର ବେଳ ରଖିଥାନ୍ତି । ବିବିଧ କଷ୍ଟମାନ ଦିଅନ୍ତି ॥
ବିକଳେ କରଇ ରୋଦନ । ତରଣ ନ କହେ ବଚନ ॥
ପୁଣି ତା କେଶ କରେ ଧରି । ଏଠାରୁ ନିଅନ୍ତି ଘୋଷାରି ॥
ଅନେକ ଯନ୍ତ୍ରସନ୍ତ ହୋଏ । ଶୁଣ ହେ ପ୍ରଭୁ ଦେବରାୟେ ॥
ଯେ ଅବା ଧର୍ମ ଆଚରି କଲା । ପ୍ରଭୁ ସେବଣ ଧନ ନେଲା ॥
ତାହାକୁ ନାହିଁ କଛ ଭୟେ । ଏଠାରୁ ଅବହେଳେ ଯାଏ ॥
ଏ ପୁରେ ଲାଗଇ ଉତ୍ତମ । ଶୁଣ ହେ ପୁରୁଷଉତ୍ତମ ॥
ପାପୀ ତରିବେ ଏଥେ କାହିଁ । ତୁମ୍ଭେ ହେ ଜଗତର ଗୋସାଇଁ ॥
ଶୁଣି ମୁଁ ମଉନ ହୋଇଲି । ଏକଥା ପ୍ରମାଣ ବୋଇଲି ॥

ଅର୍ଜୁନ ଉବାଚ ।

ଅର୍ଜୁନ ପୁଣି ପଚାରନ୍ତି । ଶୁଣ ହେ କମଳାର ପତି ॥
ଏଥକୁ ପ୍ରତିକାର କହ । ଭୟେ କମ୍ପିଲା ମୋର ଦେହ ॥

ଶ୍ରୀ ଭଗବାନୁବାଚ ।

କୃଷ୍ଣ ବୋଲନ୍ତି ହେବ ଶୁଣ । ଏଥକୁ ଅଛି ପରିତ୍ରାଣ ॥
ଯେ ଅବା ରବିବାରଦିନ । ଆମିଷ କରନ୍ତି ଭୋଜନ ॥
ଅମାବାସ୍ୟା ସଙ୍କ୍ରାନ୍ତି ହୁଇ । କି ଅବା ଏକାଦଶୀ ହୋଇ ॥
ଏଥି ଆମିଷ ନ ଭୁଞ୍ଜିବ । ତଇଲ ଅଙ୍ଗେ ନ ଘେନିବ ॥
ବ୍ରାହ୍ମଣେ ବସ୍ତ୍ର ଦାନ ଦେବ । ସେଠାରେ କମ୍ପିତେ ରହିବ ॥
ଏଠାରେ ଦେଇଥାଇ ଯାହା । ସେ ପୁରେ ପାଇ ପୁଣ ତାହା ॥
ସେ ବସ୍ତ୍ର ଦିଅନ୍ତି ଘୋଡାଇ । ସୁପଥେ ନିଅନ୍ତି କଢ଼ାଇ ॥
ତାହାକୁ ନ ଲାଗଇ ଶ୍ରମ । ଶୁଣ ହେ ବୀରଙ୍କ ଉତ୍ତମ ॥
ମକରମାସେ ଯେଉଁ ଜନ । ପ୍ରଭାତେ କରନ୍ତି ସ୍ନାନ ॥

ସ୍ନାନ ଯେ କରିବ ଅଧିକ । ଅଗ୍ନିର ପାଶ ନ ବସିବ ॥
ମୋ ନାମ ଘୋଷୁଥିବ ମନେ । ମୋ ରୂପ ଦେଖିବ ନୟନେ ॥
ସତ୍ୟ କହିବ ପ୍ରତିଦିନ । ଭୁଞ୍ଜିବ ଏକବେଳ ଅନ୍ନ ॥
ଉଆ ତଣ୍ଡୁଳ ରାନ୍ଧିଥିବ । କେବଳ ବେଳେକ ଭୁଞ୍ଜିବ ॥
ତାହା ଭୁଞ୍ଜିବ ଏକାବେଳେ । ଆମିଷ ନ ଛୁଇଁବ କାଳେ ॥
କେନ୍ଦୁ କଇଁଥ କରକୋଳି । ଏମାନ ସର୍ବ ଥିବ ପାଳି ॥
ଏମନ୍ତ ଭାବେ ମାସେ କଲେ । ସେଠାରୁ ତରିଯାନ୍ତି ଭଲେ ॥
ନୋହିଲେ ଏମନ୍ତ କରିବ । କାଠଗୁଡ଼ିଏ ଭିଆଇବ ॥
ଜାଣିବ ଶୀତକାଳ ଏହି । ଅଗ୍ନି ଜାଳିବ ପଥେ ନେଇ ॥
ସେ ଅଗ୍ନି ପାଶେ ଯେ ମିଳିବ । ତାଙ୍କୁ ନିଷେଧ ନ କରିବ ॥
ଦେବତା ବ୍ରାହ୍ମଣେ ଭକତି । ମୋ ପାଦପଦ୍ମେ ଥିବ ମତି ॥
ସେ ପ୍ରାଣୀ ନିଶ୍ଚୟ ତରଇ । ଶୁଣ ହେ ଯୁଧିଷ୍ଠିର ଭାଇ ॥
ମୋ ନାମ କୃତାର୍ଥ ହୁଅଇ । ମୋ ନାମ ବିନୁ ନାହିଁ ପାର ॥
ମୋତେ ଭଜନ୍ତି ଯେତେ ପ୍ରାଣୀ । ତରନ୍ତି ଭବତରଙ୍ଗିଣୀ ॥
ଦେବଙ୍କ ସଙ୍ଗତେ ବସନ୍ତି । ସୁଖେ ଅମୃତ ଫଳ ସନ୍ତି ॥
ଉତ୍ତମଠାରେ ଜାତି ହୋଇ । ମର୍ତ୍ତ୍ୟେ ବହୁତ ପୂଜା ପାଇ ॥
ପୁଣି ହିଁ ଅନ୍ତକାଳେ ଜାଣ । ହୁଅଇ ମୋ ଦେହରେ ଲୀନ ॥
ଅର୍ଜୁନ ଏକମନେ ଶୁଣ । ଏମନ୍ତ ଭାବେ ମୋର ଗୁଣ ॥
ଅନେକ ତୀର୍ଥ ଯାତ୍ରା କଲେ । କୋଟିଏ ଗୋରୁଦାନ ଦେଲେ ॥
ପର୍ବତ ସମାନେ ସୁବର୍ଣ୍ଣ । ସନ୍ତୋଷଚିତ୍ତେ ଦେଲେ ଦାନ ॥
ଅପର୍ବ ଅନ୍ନଦାନ ଦେବ । କୋଟିଏ ଯାଗ ଆରମ୍ଭିବ ॥
ଏମନ୍ତ ଫଳହୋଇ ଯେତେ । ଗୀତା ଶୁଣିଲେ ଫଳ ତେତେ ॥
ଫଳକୁ କହୁ ଶୁଣ ଚିତ୍ତେ । ଏ ଗୀତା ଶୁଣୁଥିବ ନିତ୍ୟ ॥
ପାଇବ ଧନ ମିତ୍ର ପୁତ୍ର । ପବିତ୍ର ହୋଇବ ତା ଗାତ୍ର ॥
ଅନ୍ତେ ପାଇବ ସ୍ୱର୍ଗେ ବାସ । ଭଣେ ମୃଗାଙ୍କ ଦାସ ଶିଷ୍ୟ ॥

ମୋ ନାମ କୃଷ୍ଣଦାସ କହି । ଅଠସ୍ତର ଯେ ପଦ ଏହି ॥
ଇତି ଶ୍ରୀ ହି ଙ୍ଗନ୍ଦୁଗୀତାରସେ ମହାପୁରାଣେ ହରିଅର୍ଜୁନ ସମ୍ବାଦେ
ଯମପୁର ମହିମା କଥନେ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ ।

### ଶ୍ରୀ ଭଗବାନୁବାଚ ।

ବୋଲନ୍ତି ପ୍ରଭୁ ଦେବରାଜେ । ସେଠାରୁ ଆମ୍ଭେ କଲୁ ବିଜେ ।
ବେନି ଯୋଜନ ପରଯନ୍ତେ । ଶରୀର କମ୍ପି ଲାଗି ଶୀତେ ॥
ଆଉ ତେଣିକି ହିମ ନାହିଁ । ଆନନ୍ଦେ ଗଲୁ ପଥ ବାହି ॥
ଥୋକାଏ ପୁର ଗଲୁ ଚଳି । ନରକଦ୍ୱୀପେ ଯାଇଁ ମିଳି ॥
ସେ ପୁରକଥା ଶୁଣ ବାବୁ । ଦିଶୁଛି ଧୂମମୟ ସବୁ ॥
ବହୁଛି ପ୍ରଳୟ ବତାସ । ଧୂଳି ଉଡ଼ଇ ଦଶଦିଶ ॥
ଗଗନେ ମେଘ ଅଛି ବ୍ୟାପି । ଜଳ ବରଷେ ଝୋପି ଝୋପି ॥
ବିଟ୍ଟେ ମାରଇ ଘଡଘଡ଼ି । ପ୍ରସ୍ତର ବଜ୍ରବାଣ ପଡ଼ି ॥
ଅକାଶେ କେହି ତ ନ ଦିଶି । ପଡୁଛି ଲୁସି ଖଣ୍ଡା ଅସି ॥
ନଉର କାତ ବଜ୍ର ଯେତେ । ଶକତି ଶାବେଳି ସହିତେ ॥
ଶୂଳ ଭୁଷଣ୍ଡି ମୁଦ୍ଗର । ଗଦା ପରିଘ ଚକ୍ର ଶର ॥
ନାରାଚ ତୂଣ ଗଦା ଅସି । ପଡୁଛି ନରନ୍ତୁ ଝସି ॥
ଦେଖୁଣ ହୋଇଲୁ ସ୍ତବଧ । ମନରେ ପାଇଲୁ ବିଷାଦ ॥
ବେନି ମନ୍ତ୍ରୀଙ୍କ କଲୁ ପୃଚ୍ଛା । ଶୁଣ ହେ ଯମର ପରିଷ୍ଠ ॥
କହ ଏ ପୁର କିସ ନାମ । ଦିଶୁଛି ଉତ୍କଟ ଧୂମ ॥
କିପାଇଁ ବହୁଛି ପବନ । ମେଘ କରଇ ଗରଜନ ॥
କେ ଅବା ରହିଛି ଅକାଶେ । ଶସ୍ତ୍ରକୁ ଛାଡୁଛି ନରଶେ ॥
ଏ କଥା କହ ଆମ୍ଭ ଅଗେ । ଶୁଣି ଜାଣିବା ଟେକଇଁ ବାଗେ ॥
ମନ୍ତ୍ରୀ ବୋଇଲେ ଶୁଣ ତାହା । ଯାହା ପୁଚ୍ଛିଲ ତଉଁବାହା ॥

ଅମ୍ଭେ କହୁଛୁ ସତ୍ୟବାଣୀ । ଦକ୍ଷିଣ ଦେବୀ ଗୋସାମଣୀ ॥
ବହୁତ କ୍ଷୁଧା ତୃଷା ପାଇ । ବିଜୟ କଲେ ମହାମାୟୀ ॥
ହସ୍ତେ ଖପର ହସ୍ତେ ଖଣ୍ଡା । ରଣପା ଚଢ଼ିଣ ଚାମୁଣ୍ଡା ॥
ପେଟ ଖଙ୍କାଳ ନର କାଢ଼ି । ଲଢେ ଘୁଡ଼ନ୍ତି ଦୀର୍ଘରଢ଼ ॥
ମୁକୁଳା ହୋଇଅଛି କେଶ । ଦିଶଇ ଭୟଙ୍କର ବେଶ ॥
ପ୍ରେତ ପିଶାଚଗଣ ସଙ୍ଗେ । ଯାଇ ମିଳିଲା ଯମ ଆଗେ ॥
ବୋଇଲେ ଶୁଣସି ତନୟେ । କ୍ଷୁଧାରେ ଆକୁଳ ଏମା କାୟେ ॥
ଆହାର ଦିଅ ବାବୁ ମୋତେ । ମାଗିଲି ଏତେକାଳେ ତୋତେ ॥
ନୋହିଲେ ସଂସାର ଦହିବ । କ୍ଷଣକେ ସବୁ ଖାଇଦେବ ॥
ଯମ ବୋଇଲା ଶୁଣ ମାତା । ନ କର ଅବେହାର କଥା ॥
କରଞ୍ଜଦ୍ୱୀପ ବାଟେ ଯାଅ । ପାପୀମାନଙ୍କୁ ଶୋଷି ଖାଅ ॥
ଶୁଣି ସନ୍ତୋଷ ହେଲା ଦେବୀ । ଅଇଲା ମହା ଭଇରବୀ ॥
ଆକାଶେ ରହିଲା ଭବାନୀ । ସଙ୍ଗତେ ଚଉଷଠି ଯୋଗିନୀ ॥
ଦେବୀଙ୍କ ଆଜ୍ଞାରେ ପବନ । ବହିଲା ତହିଁ ଘନ ଘନ ॥
ମନୁଷ୍ୟ ମଲେ ମର୍ତ୍ତ୍ୟପୁରେ । ଆଣିଣ ଯମର ଉଗରେ ॥
ଚର୍ମବନ୍ଧୁରେ ବାନ୍ଧଥାନ୍ତି । ଅନେକ ମାଡ଼ ଯେ ମାରନ୍ତି ॥
ଏଠାରେ ଯେତେବେଳେ ହୋଏ । ବତାସହାତେ ଶୂଳ ନୋହେ ॥
ଆଖିରେ ଧୂଳି ପଡ଼େ ଉଡ଼ି । ଖୁଣ୍ଟି ହୁଅଇ ହରଘତ ॥
ଏ ଶସ୍ତ୍ର ତାର ଅଙ୍ଗେ ବାଜି । ବାକଲେ ଉଠେ ଗଳଗାଜି ॥
ରୁଧିର ବହେ ଝର ଝର । ବିକଳ ହେ କହୁ ତାହାର ॥
ଦେବୀ କରନ୍ତି ଚେଭ୍ରରପାନ । ଶୁଣ ହେ ପ୍ରଭୁ ଭଗବାନ ॥
କରଞ୍ଜଦ୍ୱୀପ ଏ ଗୋସାଇଁ । ଚାମୁଣ୍ଡା ରହିଛି ଅନାଇ ॥
ବାଅ ବହିବା ମେଘ ଛାୟା । ଏ ସବୁ ଦେବୀଙ୍କର ମାୟା ॥
ଏମାନେ ଶସ୍ତ୍ର ଛାଡ଼ୁଥିଲେ । ତୁମ୍ଭଙ୍କୁ ଦେଖି ଘୁଞ୍ଚିଗଲେ ॥
ଯେ ଅବା ପୁଣ୍ୟ କରୁଥାଇ । ଏଠାରେ କଷ୍ଟହେ ତରଇ ॥

ପ୍ରାଣୀଙ୍କି ଦୁଃଖମୟ ବାଟ । ଦଅନ୍ତି ଅପ୍ରମେୟ କଷ୍ଟ ॥
ଶୁଣି ମୁଁ ହୋଇଲି ଆଶ୍ଚର୍ଯ୍ୟ । ଶୁଣ ହେ ପାଣ୍ଡୁର ଆତ୍ମଜ ॥
ଯେତେ ଦେଖିଲୁ ଯମପୁରେ । କେତେ କହିବା ତୋ ଆଗରେ ॥
ସେ କଥା ଜାଣି ଆମ୍ଭେମାନେ । ତାହାଙ୍କୁ ପୁଚ୍ଛିଲୁ ଯତନେ ॥
ଅର୍ଜୁନ ଯୋଡ଼ି ବେନିହସ୍ତ । ବୋଲଇ ଶୁଣ ଜଗନ୍ନାଥ ॥
କି ପାପ କରିଲେ ଯେ ନରେ । ଏ ଦଣ୍ଡ ଲଭନ୍ତି ସେଠାରେ ॥
ଶୁଣିବି ତୁମ୍ଭ ଶ୍ରୀମୁଖରୁ । ସଂଶୟ ଫିଟିବ ମନରୁ ॥

ଶ୍ରୀ ଭଗବାନୁବାଚ ।

ହସି ବୋଲନ୍ତି ଦେବରାୟ । ସେ କଥା ଶୁଣ ଧନଞ୍ଜୟ ॥
ଯେ ଅବା ମନ୍ତ୍ରଗଂ ବନ୍ଧ । କଣ୍ଟା ପୋତଇ ବାଟେ ନେଇ ॥
ବାଟରେ କରେ ଖାଲ କଣା । ପ୍ରାଣୀଙ୍କ ପଥ କରେ ବଣା ॥
ଯେ ଅବା ବନସ୍ତ ପୋଡ଼ଇ । ପୋଡ଼ିବା ଜନ୍ତୁଙ୍କୁ ମାରଇ ॥
ଯେଜନ୍ତୁ ହରନ୍ତି ପରସ୍ତ୍ରୀ । ସେହୁ ଏଦଣ୍ଡ ଅଶେଷ କରି ॥
ଯେ ଅବା ଯବନି ବୃତ୍ତି କରି । ରଣେ ପଳାନ୍ତି ପିଠିକରି ॥
ଯେଉଁ ବ୍ରାହ୍ମଣ ଧରିବାଡ଼ି । ପଥରେ କରଇ ଧାଉଡ଼ି ॥
ସେ ପ୍ରାଣୀ ଏ ଦଣ୍ଡ ଲଭନ୍ତି । କୁମ୍ଭିପୁରରେ ପଡ଼ନ୍ତି ॥
ଯେ ଅବା ଜଳଗଣ ହୋଇଣ । ଜଳରେ ପଶନ୍ତି ଅପଣ ॥
ଉଚ୍ଛିଷ୍ଟ ଜଳରେ ପକାଇ । ମଥା ଯୋଡୁବ ଜଳେ ଥାଇ ॥
ତାହାଙ୍କୁ ନାହିଁ ସଦଗତି । ଅନ୍ତେ ପାଇବ ନାନା ଶାସ୍ତି ॥
ଯେ ଓଦାବସ୍ତ୍ର ପିନ୍ଧିଥାଇ । ଶିବଙ୍କୁ ଦର୍ଶନ କରଇ ॥
ଯେ ଅବା ପୁଷ୍ପଣ ନନନ୍ତି । ସୂର୍ଯ୍ୟଙ୍କୁ ଅର୍ଘ୍ୟ ନ ଦଅନ୍ତି ॥
ଯେ ଥବା ବ୍ରତ କରୁଥାଇ । ଯୁବତୀ ସଙ୍ଗରେ ମଜ୍ଜଇ ॥
ଗୁରୁଦୋରହା ଯେଉଁ ନର । ତାଙ୍କୁ କେବେହେଁ ନାହିଁ ପାର ॥
ଏତେ ପାତକ କରୁଥିଲେ । ପଡ଼ନ୍ତି ଦେଖ ଦାନ୍ତେ ମଲେ ॥
ଏ କଥା ପ୍ରମାଣ ହେ ପାର୍ଥ । ତୋ ଆଗେ କହିଲି ଯଥାର୍ଥ ॥

ଅର୍ଜୁନ କହନ୍ତେ ମୁରାର । ଏହୁରୀ ଯନ୍ତରେ ଏ ସବ ॥
ଭଣଇ ଦୀନକୃଷ୍ଣ ଦାସ । ସୁଜନେ ନ ଦେବେ ଦୋଷ ॥

ଇତି ଶ୍ରୀ ଦ୍ୱିତୀୟଗୀତାରସେ ମହାପୁରାଣେ ହରି ଅର୍ଜୁନ ସମ୍ବାଦେ
କରଞ୍ଜଦ୍ୱୀପ ମହିମା କଥନେ ନାମ ପଞ୍ଚମୋଽଧ୍ୟାୟଃ ।

---

ଷଷ୍ଠ ଅଧ୍ୟାୟ ।

ଶ୍ରୀ ଭଗବାନୁବାଚ ।

ବୋଲନ୍ତି କମଳା ରମଣ । ଅର୍ଜୁନ ଏକମନେ ଶୁଣ ॥
ତୁ ଅବା ବୋଲବୁ ଏ ମିଛ । ଆମ୍ଭେ ତା ଦେଖିଲୁ ପ୍ରତ୍ୟକ୍ଷ ॥
ଏଗାର କୋଶ ପରଯନ୍ତେ । ଶସ୍ତ୍ର ଯେ ପଡ଼ୁଛି ନିରତେ ॥
ଚଳଇ ନନ୍ଦିଘୋଷ ରଥ । ସେଠାରୁ ଚଳିଗଲୁ ପଥ ॥
ପୁଣିହିଁ ଦେଖିଲୁ କଥାଏ । ଦୂରରୁ ସମୁଦ୍ର ଗୋଟିଏ ॥
ଫୁଟୁଛି ଟକଟକ ହୋଇ । ଏଣିକି ଥଳକୂଳ ନାହିଁ ॥
ସେ ଘୃତ ହେଉଛି ହାଣ୍ଡୋଳ । ଅଗ୍ନି ଯେ ଉଠୁଛି ପ୍ରଜ୍ଜ୍ୱଳ ॥
ଫୁଟି ଉଠୁଛି କୂଳେ ଆସି । କେ ଅବା ଯିବ ତହିଁ ପଶି ॥
ହବସେ ହେଉଛି ଆଉଟି । ଉଡୁଛି ପଡ଼ୁଅଛି ଫୁଟି ॥
ଶୁଣିଲେ ଭୟଙ୍କର ହସେ । ରହି ନ ହୁଇ ତହିଁ ପାଶେ ॥
ତପତବାଲି କୋଶେ ଯାଏ । ତହିଁ ପଡ଼ନ୍ତେ ଗଳି ନୁହେ ॥
ପ୍ରଚଣ୍ଡ ଖରା ପଡୁଅଛି । ସନ୍ନିଧେ ବୃକ୍ଷ ନାହିଁ କିଛି ॥
ଦଗଧବାଲି ସେହିଭାବେ । ଶୀତଳ ନାହିଁ ଟିକେ ଠାବେ ॥
ଦେଖିଣ ଚକିତ ହୋଇଲୁଁ । ସେଠାରେ ରଥ ରୁହାଇଲୁ ॥
ମନ୍ତ୍ରୀକି ତହିଁକି ହକାର । ବୋଇଲୁଁ କହ ହେ ଉଡ଼ିକର ॥
ଏ ପୁଣ କସ ବିପରୀତ । ଏ ନଦୀଜଳ ସବୁ ଘୃତ ॥
ଫୁଟୁଛି ତପତର ଘୋରେ । ଏ ମାର୍ଗେ ଯାଅ ହେ କେମନ୍ତେ ॥
ମନ୍ତ୍ରୀ ବୋଇଲେ ଯୋଡ଼ି କର । ଏ ସବୁ ଭିଆଣ ତୁମ୍ଭର ॥

ତୁ ନାଥ ତ୍ରୈଲୋକ୍ୟର ନାହା । ତୁମ୍ଭଙ୍କ ଅଗୋଚର କାହା ॥
ସଂସାର ଆଡଜ୍ଞାନ କରୁ । କପଟେ ଆମ୍ଭଙ୍କୁ ପଚାରୁ ॥
ଅମ୍ଭେ କି କହିବାକୁ କ୍ଷମ । ଶୁଣିଲେ କି ବୋଲିବେ ଯମ ॥
ବାପ ଅଗରେ କାହିଁ ପୁତ୍ର । କହିବ ଶାସ୍ତ୍ରର ଚରିତ୍ର ॥
କବି ଅଗରେ ମୂର୍ଖଜନ । କହିବ ପଦ ଅର୍ଥମାନ ॥
ଜ୍ଞାନୀ ଅଗରେ କି ଅଜ୍ଞାନୀ । କହିବ ନବଲିବ ଯେନ ॥
ବସ୍ତୁ ଅଗରେ ଯମଦୂତେ । କହିବୁଁ ପାପ ପୁଣ୍ୟ କେତେ ॥
ଏକଥା ଉଚିତ ନୁହଇ । ଶୁଣ ହେ ପ୍ରଭୁ ଭବତ୍ରାହୀ ॥
ଆମ୍ଭେ ବୋଇଲୁଁ ତାହା ଜାଣି । ତୁମ୍ଭର ମୁଖୁ ଦେଖି ଶୁଣି ॥
ଜାଣି ପୁଛନ୍ତି ଯେଉଁ ପ୍ରାଣୀ । ପଣ୍ଡିତ ବୋଲି ତାକୁ ଜାଣି ॥
ଏଥକୁ ନ କର ଶୋଚନା । ଆମ୍ଭ ଅଗରେ କହ ଜନା ॥
ଶୁଣି ବୋଲନ୍ତି ମନ୍ତ୍ରୀ ବେନି । କହିବୁଁ ତୁମ୍ଭ ଆଜ୍ଞା ଘେନି ॥
ଶୁଣ ହେ ପ୍ରଭୁ ଆଦ୍ୟମୂଳ । ଏହି ଯେ ଚଡବା ଅନଳ ॥
ସର୍ବ ଯାଗରୁ ଘୃତ ଭକ୍ଷି । ଏଠାରେ ରହିଅଛି ଶିଖୀ ॥
ଅଗ୍ନିଙ୍କ ଭୋଗ ଅଶେଷକଲ୍ପ । ତା ଉଦରେ ଘୃତ ନ ପଶିଲା ॥
ଏଠାରେ ନିବାସିଲ ଅଗ୍ନି । ଅଗ୍ନି ଏଠାରେ ଅଛି ପଶି ॥
ତେଣୁ ଏ ହୋଇଲା ତପତ । ଆଜନ୍ମ ହେଉଅଛି ଘୃତ ॥
ଯମ ବୋଇଲେ ବାଟେ ଥାଅ । ପାପୀ ଲୋକଙ୍କୁ ଦଣ୍ଡ ଦିଅ ॥
ଏଣୁ ରହିଲ ଏହୁପଥେ । ଶୁଣ ହେ ପ୍ରଭୁ ଜଗନ୍ନାଥେ ॥
ମନୁଷ୍ୟ ମର୍ତ୍ତ୍ୟପୁରେ ଥାଇ । ଧନ ଅର୍ଜନେ ମନ ଦେଇ ॥
ପୁତ୍ର ଦୁହିତା ଦାର ଦେଖି । ମାୟାରେ ପଡେ ହୋଇ ସୁଖୀ ॥
ବଞ୍ଚଇ ଦୁଃଖ ସୁଖେ ଦିନ । ପ୍ରଭୁଙ୍କ ନ କଲେ ଭଜନ ॥
ନ କରେ ଦାନ ଧର୍ମ ବାଞ୍ଛା । କୁଟୁମ୍ବ ପୋଷିବାରେ ଇଚ୍ଛା ॥
ସେ ପ୍ରାଣୀ ମରିବ କେମନ୍ତେ । ମରଣେ କିଙ୍କରଗଣ ଅଣନ୍ତେ ॥
ଧରି ଆଣନ୍ତି ଯମଦୂତ । କଷଣ ଦିଅନ୍ତି ବହୁତ ।

ଗଳାରେ ଲଗାଇ ଦଉଡି । ଯତନେ ବାନ୍ଧିଥାନ୍ତି ଭିଡ ॥
ସକଳ ପୁରେ କଷ୍ଟଦେଇ । ବଳେ ନିଅନ୍ତି ଘୋଷରାଇ ॥
ଏଠାରେ ହୁଅଇ ପ୍ରବେଶ । ଭୟେ କମ୍ପଇ ସେ ପୁରୁଷ ॥
ଅଳ୍ପିଲେ ଚଉକଡ ଚାହିଁ । ବୋଲଇ ଦୂତଙ୍କୁ ଅନାଇଁ ॥
ଗୋସାଇଁ ଏ କଥା କରିବା । ଏ ପଥେ ଯାଇ ନ ପାରିବା ॥
ଆନ ବାଟରେ ନେଇ ଚଳା । କେତେଦେହେଁ ଦେଉଛ ଯାତନା ॥
ଦୂତେ ହୁଅନ୍ତି ଅନ୍ତରଳ । ଅନ୍ଧେ ଯେ ଧରିଛନ୍ତି ବାଳ ॥
ଝଙ୍କୁଡ ବେଦନାଯାତ୍ରେ ବଳେ । ପଶିଲ ବଡ଼ବା ଅନଳେ ॥
ଚପଟଘାତେ ମହାଚଣ୍ଡ । ଛକା ପାଡ଼ଇ ଜୀବ ଅଗ୍ରା ॥
ଘଳଟି ଚର୍ମ ଝଡ଼ ବୋଲି । ଉଛେ ଡାକଇ ମଲି ମଲି ॥
ବୋଲଇ ରଖ ବାପ ମାଏ । ଏମନ ବୋଲି ଘୋରେ କହେ ॥
ମୋପଥ ଏ ବଇତରଣୀ । ମୁଁ ମୂଢ଼ ଅଇଲି ନ ଜାଣି ॥
ମର୍ତ୍ତେ ମନୁଷ୍ୟ ଦେହ ବହି । ଥିଲି ମୁଁ କେତେ ସୁଖପାଇ ॥
ଜନ୍ମା ଅଇଲି ତାଙ୍କ ବୋଲେ । ଏ ମତେ ପାଇ ଦଣ୍ଡ ଦେଲ ॥
ଏସନ ବୋଲନ୍ତି ସକଳ । ନୟନୁ ବହେ ଅଶ୍ରୁଜଳ ॥
ବୋଲନ୍ତି ଯମର ଡଗରେ । ତୁ ମୂଢ଼ ଥିଲୁ ମର୍ତ୍ତ୍ୟପୁରେ ॥
ଯାହାର ପାଇଁ ମନଦେଇ । ସମ୍ପଦ ଅର୍ଜିଲୁ ଯେ ତୁହି ॥
ସେମାନେ ଗଲେ ଏବେ କେଣେ । ତୋ ସଙ୍ଗେ ନଇଲେକ ଜଣେ ॥
ଯଦ୍ୟପି ପୁଣ୍ୟ କରିଥାନ୍ତୁ । କିପାଇ ଏ ଦଣ୍ଡ ପାଆନ୍ତୁ ॥
ଏ ପଥେ ଧର୍ମହିଁ ସେ ଯାହା । ତୁ ମୂଢ଼ ବୁଦ୍ଧିରେ ଦୋରେହା ॥
ଏସନ ବୋଲି କେଶ ଧରି । ବଜ୍ରେହେଁ ଅଣନ୍ତି ଘୋଷାରି ॥
ଅପଣେ ପଥେ ଥାନ୍ତି ବସି । ଯତନେ ମାରୁଥାନ୍ତି ଧ୍ୱଂସି ॥
କ୍ଷମା କରୁଣା ତାଙ୍କ ନାହିଁ । ଶକଳ ପାଇବେ ସେ କାହିଁ ॥
ଅପାର ବେଳ ଦଣ୍ଡ ନେଇ । କରନ୍ତି ଯମ ଅଗ୍ରେ ନେଇ ॥
ଅମ୍ଭେ ତ ଅଟୁଁ ମନ୍ତ୍ରୀବର । ଅମ୍ଭଙ୍କୁ ନୋହେ ଅଗୋଚର ॥

ପାଞ୍ଚି ଦେଖିଣ ସର୍ବ କହୁ । ଦୋଷ ବଗୁର ଦଣ୍ଡ ଦେଇ ॥
ଯେ ଅବା ଠାକୁରଙ୍କ ଦାସ । ଅମ୍ଭେ ନଯାଉଁ ତାଙ୍କପାଶ ॥
ଶୁଣି ମୁଁ ବ୍ୟକଳ ହୋଇଲି । ମଉନେ କଥା ନ କହିଲି ॥
ମନ୍ତ୍ରୀ ପନ୍ଥାକୁ ଘୃଞ୍ଚି ଗଲେ । ହୃଦରେ ମହାଭୟ କଲେ ॥
ଅର୍ଜ୍ଜୁନ ବୋଲଇ ବଚନେ । ଶରଣ ତୋ ପାଦର ମୂଳେ ॥
ପ୍ରସନ୍ନଚିତ୍ତେ ଆଜ୍ଞା ହେଉ । ତୋ ପାଦେ ଚିତ୍ତ ମୋର ରହୁ ॥
ଯମଦଣ୍ଡରୁ କର ପାର । ଯେଣେ ତରଇ ଭବପାର ॥
ତୁଟୁ ଏ ମୋର ମାୟାମୋହ । ଭଣେ ନୃସିଂହ ଦାସ ପୁଅ ॥
ମୋହର ନାମ କୃଷ୍ଣ ଦାସ । ମୋତେ ଉଦ୍ଧର ପୀତବାସ ॥
ଅର୍ଜ୍ଜୁନ ବୋଲଇ ବଚନ । ଶୁଣ ହେ ରାଜୀବଲୋଚନ ॥
ବଢ଼ବାନଳ କଥା ଶୁଣି । ଭୟ ଲାଗିଲା ଚକ୍ରପାଣି ॥
ଏଥାକୁ ପ୍ରତିକାର ବାଟ । କହ ହେ ଦେବକୀର ସୁତ ॥

## ଶ୍ରୀ ଭଗବାନୁବାଚ ।

କୃଷ୍ଣ ବୋଲନ୍ତି ଶୁଣ ତାହା । ଏଥକୁ ପ୍ରତିକାର ଯାହା ॥
ପିଣ୍ଡେ ପରାଣ ଥିବା ବେଳେ । ଗୋଦାନ ଦେବ ତେତେବେଳେ ॥
ଗଜ ତୁରଙ୍ଗ ଛତ୍ରମାନ । ଉତ୍ତମ ବିପ୍ରେ ଦେବ ଦାନ ॥
ଛତ୍ର ବର୍ଣ୍ଣୋ ଦାନ ଦେବ । ପାଦୁକା ପାଣି ଜଳ ସର୍ବ ॥
ଏଠାରେ ଯାହା ଦେଇଥାଇ । ସେଠାରେ ପ୍ରାପତ ହୁଅଇ ॥
ତାହା ଅଗ୍ରେହି ସଖେ ଯାନ୍ତି । ନୋହିଲେ ନାନା ଶାସ୍ତି ପାନ୍ତି ॥
ଯେ ଅବା ଦେଇ ନ ପାରିବ । ସେ ଲୋକ ଏମନ୍ତ କରିବ ॥
ବହୁତ ଲଗାଇବ ବୃଷ । ତେବେ ହୋଇବ ପ୍ରାଣୀ ମୋକ୍ଷ ॥
ସେ ଠାରେ ଅଦେଖନ୍ତି ଦେଖା । ଯମପଥକୁ ହୋନ୍ତି ଶିଖା ॥
ତହିଁ ଛାୟାରେ ଉଭା ହୋଇ । ଅଳପ ଶାନ୍ତି ଲଭିପାଇ ॥
ସେ ପନ୍ଥ ପଡଥାଇ ଝୁଡ଼ି । ତହି ଉପରେ ଯାନ୍ତି ମାଡ଼ି ॥

ନାବସଙ୍କୁଳ ଜଳଧାଠ । ଯତନେ ଉଥଇବ ବାଠ ।
ସେ ପ୍ରାଣୀ ପ୍ରାଣତ୍ୟାଗ କାଳେ । ମିଳିବ ବଡ଼ବାଅନଳେ ।
ନକ୍ଷଙ୍କୁଲମାନ ଧରି । ଯତନେ ରଖିଥିବ ପାରି ।
ତହିଁ ବସିଣ ସୁଖେ ଯାଇ । ବହୁତ ଗଜରଜ ପାଇ ।
ଯେ ଅବା ପଟେ ଉପକାଶ । ବଡ଼ବାନଳକୁ ଯାନ୍ତି ତରି ।
ମୋ ନାମ ଘୋଷୁଥିବ ନିତି । ତେଣୁ ପାଇବ ସଦଗତି ।
ଅର୍ଜୁନ କହେ ଚକାଡୋଳା । ଭଟେଣ ନୃସିଂହାଦାଧ ବଳା ।
ମୋ ନାମ କୃଷ୍ଣଦାସ ହୋଏ । ଶେଷ ହୋଇଲା ପଦ ଶାଏ ।।

ଇତି ଶ୍ରୀ ଦ୍ୱିଷାସୁଗୀତାରସେ ମହାପୁରାଣେ ହରି
ଅର୍ଜୁନ ସମ୍ବାଦେ ବଡବାନଳମହିମା କଥନେ
ନାମ ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ ।

ଶ୍ରୀ ଭଗବାନୁବାଚ ।

କହନ୍ତି ପ୍ରଭୁ ଦେବହରି । ସେଠାରୁ ଗଲେ ବଜେକରି ।
ଅନ୍ତେତ ଗଲେ ରଥେ ବସି । ବଡବାନଳେ ଡାଇ ପଶି ।।
ତପତ ନ ଲାଗିଲା ମୋତେ । ସେଠାରୁ ଚଳିଲୁଁ କାଣ୍ଟତେ ।।
ରଥ ଚଳଇ ଧାଉକାରେ । ଯାଇଁ ମିଳିଲୁ ଏକପୁରେ ।।
ସେ ପୁରେ ନ ଦେଖିଲୁ କିଛି । ଅନେକ ସର୍ପ ତହିଁ ଅଛି ।।
କେତେ ଘର ଘର ଦୁନ । ପୂରି ଅଛନ୍ତି କୋଣତନ ।।
ବିଷଜ୍ୱାଳାରେ ହୋଇ ଯାଇ । ଅଛନ୍ତି କୋଟି କୋଟି ହୋଇ ।।
ଜଗତେ ଗଜ ଶ ନାଦ କରି । କେତେ କହିବ ନାମ ଧରି ।।
ସ୍ଥାନ ମାର୍ଗାଙ୍ଗେ ଅତ୍ରମେଯ୍ୟେ । ଦଶନ୍ତି ମହାଗିରି ପ୍ରାୟେ ।।
ଜଳକ କାକ ତଳପକ୍ଷୀ । ସେଣା ପକ୍ଷୀଣ ଚନ୍ଦ୍ରମାନ୍ତି ।।

ଜନ୍ତା ପିମ୍ପୁଡ଼ି ଅପ୍ରମିତ । ମାଛି ଡ଼ାଆଁଶ ଯୂଥ ଯୂଥ ॥
କରନ୍ତି ଫୁଁ ଫୁଁ କାର ଧ୍ୱନି । ଶବଦେ ପୂରୁଛି ମେଦିନୀ ॥
ଦେଖିଣ ଚକିତ ହୋଇଲୁ । ସେଠାରେ ରଥ ରୁହାଇଲୁ ॥
ମନ୍ତ୍ରୀଙ୍କି ବୋଇଲୁଁ ବଚନ । କହ ଏ କେବଣ ଭୁବନ ॥
ସର୍ପ ଲକ୍ଷ୍ୟେ ପୂରିଛନ୍ତି । ଦେଖିଣ ଲାଗୁଅଛି ଭ୍ରାନ୍ତି ॥
କେମନ୍ତେ ଅତଯାତ ହୁଅ । ଏ କଥା ବିସ୍ତାରିଣ କହ ॥
ଚିତ୍ରଗୁପତ ମନ୍ତ୍ରୀ ଦୁଇ । କହିଲେ ଆମ୍ଭ ଆଜ୍ଞାପାଇ ॥
ବୋଇଲେ ଶୁଣି ଦାମୋଦର । ଏହାର ନାମ ନାଗପୁର ॥
ଏଥି ସର୍ବଦା ରହିଥାନ୍ତି । ପାପୀମାନଙ୍କୁ କଷ୍ଟ ଦିଅନ୍ତି ॥
ପୂର୍ବେ ଯେ ତ୍ରେତୟା ଯୁଗରେ । ଭୋ ପ୍ରଭୁ ରାମ ଅବତାରେ ॥
ହୋଇଲେ ଦଶରଥ ସୁତ । ନାମ ବହିଲ ରଘୁନାଥ ॥
ପିତାର ସତ୍ୟ ରକ୍ଷା ପାଇଁ । ଅରଣ୍ୟେ ରହିଲ ଗୋସାଇଁ ॥
ରହିଲ ଗୋଦାବରୀ କୂଳେ । ଗହନ ତପିନ ଛପୁଟଲେ ॥
ଯ୍ର ସ୍ତ୍ରୀ ବଚନ ଶୁଣି କରି । ଗଲ ଯେ ମାୟାମୃଗ ମାରି ॥
ଗୁପତେ ଥିଲା ଦଂଶପାଣି । ଚୋରାଇ ନେଲା ତୋ ଘରଣୀ ॥
ମାୟାକୁରଙ୍ଗୀ ହେନ ଆସି । ଆଶ୍ରମେ ନ ଦେଖି ସୁକେଶୀ ॥
ଦୁଃଖେ ବୁଲିଲ ବନଘୋର । ଯାଇ ଭେଟିଲ ସୁଗ୍ରୀବର ॥
ତାହାର ସଙ୍ଗେ ମିତ୍ର ହୋଇ । ବାଳିକି ମାରିଲ ଗୋସାଇଁ ॥
ସୁଗ୍ରୀବରକୁ ରାଜା କଲ । ଋକ୍ଷ ମର୍କଟ ଘେନି ଗଲ ॥
ପର୍ବତ ଘେନି ସେତୁ ବାନ୍ଧି । ସୁଖରେ ତରିଲ ବାରିଧି ॥
ଅସୁରମାନଙ୍କ ସଙ୍ଗତେ । ଯୁଦ୍ଧ ହୋଇଲା ଅପ୍ରମିତେ ॥
ରାବଣେଶର ଜ୍ୟେଷ୍ଠ ଶିଷ୍ୟ । ତୁମ୍ଭଙ୍କୁ ପେଷି ନାଗପାଶ ॥
ବାନ୍ଧିଣ ଅତି ଯତ୍ନ କରି । ବାହୁଡ଼ି ଗଲା ନିଜ ପୁରୀ ॥
ତୁମ୍ଭେ ସେ ବନ୍ଧନରେ ଥିଲ । ଗରୁଡ଼ ସୁମରଣା କଲ ॥
ଜାଣି ଅଇଲା ଖଗପତି । ବନ୍ଧନ ଫେଡ଼ିଲା ତତତି ॥

ଭୟରେ ସର୍ପ ପଳାଇଲେ । ଥୋକାଏ ପାତାଳେ ପଶିଲେ ॥
ଥୋକାଏ ଗଲେ ଏତେଣ ଦୂରେଣେ । ଥୋକେ ଲୁଚିଲେ ଯାଇ ବିଟେଣ
ଥୋକାଏ ସଂଯମନୀ ପୁରେ । ମିଳିଲେ ଯମଙ୍କ ଆଗରେ ॥
ହୁରୁ ଡାକନ୍ତି ନାଗଗଣ । ହେ ପ୍ରଭୁ ତୁମ୍ଭର ଶରଣ ॥
ଗରୁଡ଼ କରୁଅଛି ନାଶ । ତେଣୁ ଅଇଲୁଁ ତୁମ୍ଭ ପାଶ ॥
ତୁମ୍ଭେ ସୁଦୟା କର ଚଉ । ଶୁଣି ବୋଇଲା ସୂର୍ଯ୍ୟ ସୁତ ॥
ତୁମ୍ଭଙ୍କ ରଖିଲି ମୁଁ ଏବେ । ଶୁଳ ଥୋଇବ ଭଲଠାବେ ॥
ସର୍ପଙ୍କୁ ଘେନିଣ ଅଇଲା । ଯତନେ ଏଠାରେ ରଖିଲା ॥
ବୋଇଲା ଏଠାବରେ ଥିବ । ପାପିଲୋକଙ୍କୁ ଡ଼ରାଇବ ॥
ଏସନ ବୋଲି ବର କହି । ରହିଲେ ଯମ ଆଜ୍ଞା ପାଇ ॥
ମନୁଷ୍ୟ ଯେତେବେଳେ ମରି । ଆଣନ୍ତି ଯମଦୂତେ ଧରି ॥
ବାନ୍ଧିଣ ଧରିଥାନ୍ତି ଅଣ୍ଟେ । ଯତନେ ଅଣନ୍ତି ସେ ବାଟେ ॥
ସେ ଯେବେ ଅର୍ଜିଥାଇ ପାପ । ତାହାଙ୍କୁ ବେଢନ୍ତି ଏ ସର୍ପ ॥
ଏ ସର୍ପମାନଙ୍କୁ ଦେଖିଣ । ଭୟରେ କମ୍ପୁଥାଇ ପୁଣ ॥
ପବନୁ ଗମନ୍ତି ନିକଟେ । ଯାଇ ଭିଡ଼ନ୍ତି କଣ୍ଠତଟେ ॥
କେ କର ଚରଣ ଛନ୍ଦନ୍ତି । ନବତେ ଶରୀର ବାନ୍ଧନ୍ତି ॥
ନାସିକା ଶ୍ରବଣ ମୁଖରେ । ଅହି ପଶନ୍ତି ସର୍ବଦ୍ୱାରେ ॥
ସହି ନ ପାରେ ବିଷଜ୍ୱାଳେ । ବେଦନ କରଇ ବିକଳେ ॥
ପଛକୁ ହୁଅଇ ଯୋସାରି । ଅଗକୁ ନ ଚଳଇ ତର ॥
ଏମନ୍ତ ତନୁବେଳ ଯାଏ । ସର୍ପ ଭିଡନ୍ତି ତାର କାୟେ ॥
ଏପରି ଜୀବମାନେ ଅଣ୍ଟେ । ପାପିଙ୍କି କାମୁଡ଼ନ୍ତି ଅଣ୍ଟେ ॥
ମାଉଁସ ଭକ୍ଷୁଛନ୍ତି ଧରି । ନଖରେ ପକାନ୍ତି ବିଦାରି ॥
ଶ୍ୱାନ ମଞ୍ଜାର କାମୁଡନ୍ତି । ଛଦା ପିମ୍ପୁଡ଼ି ବେଢିଥାନ୍ତି ॥
ଅନେକ ହୋଏ ଜନ୍ତୁସନ୍ତୁ । ବେଢ଼ି ଚରନ୍ତି ଜୀବଜନ୍ତୁ ॥
ଅପାର କାଳେ ହୋଏ ପାର । ଶୁଣ ହେ ପ୍ରଭୁ ଚକ୍ରଧର ॥

ଯେ ଅବା ପ୍ରଭୁରେ ଭକତ । ହୃଦେ ନ ଥାନ୍ତି ତାର କତ ॥
ଏହାଙ୍କୁ ନ ଦେଖଇ ଚୋଟିକ । ପଥ ଚଳଇ ଅବହେଳ ॥
ସର୍ପ ପଳାନ୍ତି ତାଙ୍କୁ ଦେଖି । ଯମ ନ ଯାଏ ତାଙ୍କୁ ରଖି ॥
ଚଲେ ଗନ୍ଧର୍ବ ହଜ୍ଞ ମଧ୍ୟେ । ଦେଖି ଡ଼ରନ୍ତି ସୁର ହିଧେ ॥
ସୁଖେ ଅମୃତ କରେ ପାନ । ପୁଣି କରଇ ଉଛେ ଜନ୍ମ ॥
ଏମନ୍ତ କହି ମଲୀଚର । ପୁଣି ଦେହାଇଲ୍କ ଅଗ୍ରଁସାର ॥
ତାହାଙ୍କ ସଙ୍ଗେ କଥା ହୋନ୍ତେ । ପନ୍ନଗ ଅନାଇଲ୍କ ମୋତେ ॥
ପଳାଇ ଗଲ୍କ ଅନ୍ତରେ । ଗୋଟିଏ ନ ରହିଲେ ତହିଁରେ ॥
ଶୁଣ ଅର୍ଜୁନ ବୀରମଣି । ହରୁଙ୍କ ପଦେ ଏହା ଭଣି ॥
ବୋଇଲେ ଯାନକୃଷ୍ଣ ଦାସ । ମୋତେ କରିବ ପୀତବାସ ॥
ଇତି ଶ୍ରୀ ଦ୍ୱିତୀୟଗୀତାରସେ ମହାପୁରାଣେ ହରି ଅର୍ଜୁନ ସମ୍ବାଦେ
ନାଗପୁର ମହିମା କଥନେ ନାମ ସପ୍ତମୋଽଧ୍ୟାୟଃ ।



## ଅଷ୍ଟମ ଅଧ୍ୟାୟ ।

### ଅର୍ଜୁନ ଉବାଚ ।

ଅର୍ଜୁନ ପୁଣି ପଚାରନ୍ତି । ଶୁଣ ହେ କମଳାର ପତି ॥
ତୁ ଅନ୍ତର୍ଯ୍ୟାମୀ ନାରାୟଣ । ତୁମ୍ଭେ ତ ସବୁକଥା ଜାଣ ॥
ଏ କଥା ପଚାରୁଛି ମୁହିଁ । ସଙ୍କ୍ଷେପି କହିବା ଗୋସାଇଁ ॥
ଶୁଣିଲି ଯମପୁର କଥା । ମନକୁ ଲାଗୁଅଛି ବ୍ୟଥା ॥
କି ପାପ କରିଥିଲେ ନରେ । ପଡ଼ନ୍ତି ପନ୍ନଗ ହାତ୍ସର ॥
ଏ କଥା ବିସ୍ତାରି କହିବା । ଯେବେ ହେଉଛ ମୋର ସେବା ॥
ଏମନ କହି ଫାଲ୍‌ଗୁନୀ । କୃଷ୍ଣଙ୍କୁ କରଇ ବିନତି ॥

### ଶ୍ରୀ ଭଗବାନୁବାଚ ।

ହସି ବୋଲନ୍ତି ଭଗବାନ । ତୁ ଯାହା ପୁଚ୍ଛିଲୁ ଅର୍ଜୁନ ॥
ସେ କଥା କହିବା ବିସ୍ତାରି । ଶୁଣ ତୁ ମନେ ହେତୁ କରି ॥

ମନୁଷ୍ୟ ହୋଇଁ ଦେହ ହେଲ । କେ ଅବା ଅଛୁ ଏତେ ଜ୍ଞାନ ॥
ପୂର୍ବେ ଅନେକ ଘୋରତପେ । ଜନ୍ମ ହୁଅନ୍ତି ନରରୂପେ ॥
ପଡଇ ମାୟା ମୋହପାଶେ । ପୁଣ ନୁହନ୍ତି ପାର ଆଶେ ॥
କରଇ ବହୁତ କୁପାପେ । ବାଉଳ ପ୍ରାୟେ ଭ୍ରମି ହୁଏ ॥
ହରଇ ଦୁଃଖ ସୁଖେ ଦିନ । ଧନ ଅର୍ଜନେ ଦେଇ ମନ ॥
ଶ୍ରବଣେ ନ ଶୁଣେ କୀର୍ତ୍ତନ । ମୋ ପାଦେ ନ ଥାଇ ତା ମନ ॥
ନିନ୍ଦା କରଇ ମୋର ନାମ । ପାପୀ ଦୁଷ୍କର୍ମ ଦୁରାତମ ॥
ବହ୍ମାନ୍ତ ନୋହିବ କଦାଚନ । ସେ ପ୍ରାଣୀ ତରିବ କେମନ୍ତ ॥
ଅନ୍ତେ ବହୁତ ଦଣ୍ଡ ପାଇ । ପନ୍ନଗ ଦାନ୍ତରେ ପଡ଼ଇ ॥
ସେଠାରେ ରହିବ ବରଷେ । ବନ୍ଧନ ହୋଇ ଅହିପାଶେ ॥
ବିଷଜ୍ୱାଳାରେ ହୋଏ ଦହି । ଅପାର କାଳେ ନିସ୍ତାରଇ ॥
ଯେ ଅବା ପରସ୍ତ୍ରୀ ହରେ । ପଡଇ ପନ୍ନଗ ଦାନ୍ତରେ ॥
ଯେ ଅବା ପର ଲୋଭମନ । ହରନ୍ତି ପରର ବସନ ॥
ସେ ପ୍ରାଣୀ ମହା ପାପ ହୋଇ । ଅନ୍ତେ ବହୁତ ଶାସ୍ତି ପାଇ ॥
ପ୍ରଭାବ ଦିଅନ୍ତି ସେଠାରେ । ପଡଇ ସର୍ପଙ୍କ ମୁଖରେ ॥
କଷଣ ପାଇଣ ଚିହ୍ନିତ । ଶାରଙ୍ଗରୂପେ ହୋଏ ଜାତ ॥
ବୋଲନ୍ତି ପ୍ରଭୁ ଜନାର୍ଦ୍ଦନ । ଏକଥା କେବେ ନୋହେ ଆନ ॥
ଶୁଣ ହେ ପଣ୍ଡୁ ନୃପବସି । ଦେଖ ମୁଁ ସର୍ବ ଭୂତେ ଅଛି ॥
ଦେବ ମାନବ ଆଦି କରି । ଅବର ଯେତେ ଦେହଧାରୀ ॥
ସ୍ଥାବର ଜଙ୍ଗମ ସହିତେ । ସଂସାରେ ଜୀବ ଜନ୍ତୁ ଯେତେ ॥
ସକଳ ଶରୀରେ ମୁଁ ଥାଇ । ତାଙ୍କୁ ଯେ ଶୂନ୍ୟ ଯାନ୍ତି ହୋଇଁ ॥
ସେ ପ୍ରାଣୀ ଲଭେ ବଡ଼ ଦୋଷ । କ୍ଷୀଣ ହୁଅଇ ତା ଆୟୁଷ ॥
ହିନ ବଞ୍ଚଇ ଦୁଃଖ ସୁଖେ । ଅନ୍ତେ ପଡଇ ଅହି ମୁଖେ ॥
ଯେତେ ଏ ଜୀବ ଜନ୍ତୁମାନେ । ପଥରେ ଅଟବ କି ବନେ ॥
ତାହାଙ୍କ ବଳି ଦେଇ ଗଲେ । ପଡଇ ସର୍ପମୁଖେ ଭଲେ ॥

ଅପାର ଧାନ ଦୂରୁଂ ସନ୍ଧ । ତରଇ କାକପର୍ଣ୍ଣ ହୋଇ ॥
ଅପାର କାଟିଲ ଦୋଷ ହୋଏ । ଏ କଥା କେବେହେଁ ଆନ ନୋହେ ॥
ଯେ ଅବା ମତ୍ତଗର୍ବପଣେ । ଜୀବ ମାରଇ ଅକାରଣେ ॥
ଅନ୍ତେ ପଡଇ ଅନ୍ଧକୂପେ । କୃମି କୁଅଳ ଦର୍କକୁଣ୍ଡେ ॥
ଯେ ଅବା ଛନ୍ଦି ବୃତ୍ତି କରି । ମାରଇ ତୀକ୍ଷ୍ଣ ଅସ୍ତ୍ର ଧରି ॥
ତାକୁ ଲାଗଇ ବଡ଼ ପାପ । ଅନ୍ତେ ଭେଟଇ ଯେତୁ ସ୍ଥାପି ॥
ଲକ୍ଷଣ ପାରଶା ଅପାର । ମଣ୍ଡମଣ୍ଡଳେ ହୋଏ ଖର ॥
ଖର ହୋଇଣ ନାଶ ଗଲେ । ପଡଇ କୁମ୍ଭୀପାକେ ଭଲେ ॥
ଏ କଥା ପ୍ରମାଣଟି ସାର । ଯୋ ଅଟେ କହିଲି ନକର ॥
ଯେ ଅବା ଅମୁର୍ହକ ଲୋକ । ଅନ୍ତେ ପଡଇ କୁମ୍ଭୀପାକ ॥
କର୍ମେ ଅର୍ଜିଲା ଫଳ ଭୁଞ୍ଜି । ପନ୍ନଗଦନ୍ତେ ହୋଏ ଗଞ୍ଜି ॥
ସେ ଦୋଷ ଭୁଞ୍ଜେ କେତେ ସମୟେ । ଶ୍ୱାନ ଶୃଗାଳ ଗୃଧ୍ର ହୁଏ ॥
ତଦଅନ୍ତରେ ଦେହ ଛାନ । ଚଣ୍ଡାଳରୂପେ ହୋଏ ଜନ୍ମ ॥
ପୁଣି ସେ ହରିଣ କାୟେ । ଅଷ୍ଟପାଠକ ଜାତ ହୋଏ ॥
ତେବେ ପାଇବ ଭଲ ଗତି । ଶୁଣ ଅର୍ଜୁନ ଦେଇ ମତି ॥
ବିପ୍ର ଅଜ୍ଞାନ ବୁଦ୍ଧି କରି । ଯେବେ ହରଇ ଶୂଦ୍ରସ୍ତ୍ରୀ ॥
ସେ ବିପ୍ର ମହାପାପୀ ଜାଣ । ଚଣ୍ଡାଳ ସଙ୍ଗେ ତାକୁ ଗଣ ॥
ତାହାର ନ ଗ୍ରହି ବଦନ । ତାହାକୁ ନ କରିବ ମାନ୍ୟ ॥
ବିପ୍ର ସେତେବେଳେ ମୃତ୍ୟୁ ପାଇ । ପଡଇ ଅଗ୍ନିମୁଖେ ଯାଇ ॥
ତହୁଁ ନିଅନ୍ତି ବଇଷଣେ । ପକାନ୍ତି ରୌରବ ନରକେ ॥
ତହିଁ ରଉଦ୍ର ତନୁ ଥାଇ । ଅପାର କାଳେ ଦେହ ପାଇ ॥
ଅର୍ଜୁନ ଏକମନେ ଶୁଣ । ଯେ ଅବା ନୃପତି ହୋଇଣ ॥
ପରଜା ନ ପାଳଇ ଭଲେ । ଅଦୋଷୀ ଦଣ୍ଡୁଥାଇ ବଳେ ॥
ଶତ୍ରୁ ସଙ୍ଗରେ ବାଧା ନୋହେ । ଗୀତ ନାଟରେ ମତ୍ତ ଥାଏ ॥
ଗର୍ବିତ ପଣ କରି ଥାଏ । ଧାପ ଅଚଳୁ ଥାଇ ଜାତେ ॥

ସେ ରାଜା ଅତି ବଡ଼ ଦୋଷୀ । ଅଟନ୍ତି ପତଇ ନର୍କେ ଆସି ॥
ପଲଗଦାନ୍ତ ସେ ହୋଏ ଦହି । ଯୁଗ ଅନ୍ତରେ ନ ତରଇ ॥
ଏକଥା ସୁରୁପତି ବାବୁ । ତୋ ଆଗେ କହୁଅଛୁ ସବୁ ॥
ଯେ ଅବା ଖାଇବା ଲକ୍ଷେଠେ । ମୁଖରେ କହନ୍ତି କପଟେ ॥
ମହାପାତକୀ ସେ ହୁ ଲୋକ । ଅଟନ୍ତି ହୁଅନ୍ତି ନର୍କେ ଯୋକ ॥
ତେଡ଼ି ଜଳଗର୍ଭରେ । ଶୁଣ ଅର୍ଜୁନ ମନସ୍ଥିରେ ॥
ଯେ ଅବା କାମେ ବଶ ହୋଇ । ଦିବସେ ଯୁଗଟି ରହଇ ॥
ମହାପାପୀରେ ସେହୁ ଲେଖା । କେହି ନୁହଇ ତାକୁ ଶାଖା ॥
ମରେ ଆୟୁଷହୀନ ହୋଇ । ଅଧମୁଖରେ ହୋଏ ଦହି ॥
ନରକେ ପଡ଼ଇ ସେ ପୁଣି । ଏ କଥା ଧ୍ରୁବ ବୋଲି ଜାଣ ॥
ଯେ ଅବା ଅନ୍ନ ଭୁଞ୍ଜେ ବସି । ନ କରେ ଆଚମନ ଅସି ॥
ସୂର୍ଯ୍ୟଙ୍କୁ ଗୃହେଁ ତ ଯଦ୍ୟପି । ସେ ମୂର୍ଖ ବଡ ମହାପାପୀ ॥
ଅନ୍ତରେ ପାଏ ଆସି ଦଣ୍ଡ । ମାଂସ କରନ୍ତି ଖଣ୍ଡ ଖଣ୍ଡ ॥
ତରେ ଧରଣ ଲହୁଣୀ । ପକାନ୍ତି ତପ୍ତ ତୋଳି ଆଣି ॥
ମାଡ ମାରନ୍ତି ନରନ୍ତରେ । ଦିଅନ୍ତି ପଲଗ ଦାନ୍ତରେ ॥
ପୁଣି ସେଠାରୁ ଚଳ ଯାଇ । ପକାନ୍ତି କୁମ୍ଭୀପାକେ ନେଇ ॥
ସେତେକ ଅଛନ୍ତି ସଂସାରେ । ଯେ ଅବା ପୁଷ୍ପଜାତ କରେ ॥
ସେ ପୁଣ୍ୟ ଛାଡ଼ି ଦାନ ଦଢ଼ି । ନାଗପତ୍ନୀରେ ବୋଲେ ପଡ଼ି ॥
ପିତା ମାତାଙ୍କୁ ବୃଦ୍ଧକାଳେ । ସେ ଯେବେ ନ ପୋଷଇ ଭାଳେ
ତାକୁ ଲାଗଇ ବଡ଼ ଦୋଷ । ନରକେ ପଡଇ ଅବଶ୍ୟ ॥
ଅନେକ ଦୁଃଖ ତାକୁ ଅଛି । ଅଟନ୍ତି ହୁଅନ୍ତି କୀଟ ମାଛି ॥
ପ୍ରାଣୀଙ୍କି ଦଣ୍ଡିବାର ବେଳେ । ଯେ ଅବା ଦେଖିବେକ ତୋଳେ
ସବୁଗ ଦେଖିଥାନ୍ତି ତାହା । ସେ ମୂଢ ମୋହର ଦୋହରେହା
ଖଣ୍ଡଇ ପଡ଼ମାସେ ଅଂଶ । ତେଣୁ ସେ ଅଟନ୍ତି ହୋନ୍ତି ନାଶ ॥
ଏ କଥା କେବେ ନୋହେ ମିଛ । ଶୁଣ ହେ କୁନ୍ତୀଦେବୀ ବତ୍ସ ॥

ତୁ ଯାହା ପଚାରିଲୁ ମୋତେ । ଫେଡ଼ିକହିଲି ତୋ ଅଗ୍ରତେ
ଏତେ ପାତକ କରିଥିଲେ । ପଡ଼ଇ ଅଧମୁଖେ ଭଲେ
ଯେ ଅବା ମୋତେ କରେ ଲୟ । ତାହାକୁ ନାହିଁ କଷ୍ଟ ଭୟ
ଅନ୍ତେ ବସାଇ ସ୍ୱର୍ଗପୁରେ । ତୁ ମୋତେ ଭଜ ନିରନ୍ତରେ
ଖଣ୍ଡିବୁ କୋଟି ଜନ୍ମ ଦୋଷ । ଭଣେ ନୃସିଂହ ଦାସ ଶିଷ୍ୟ
ପାମର କୃଷ୍ଣ ଦାସ କହି । ନିଜ ପଦରେ ଏହୁ ରହି

ଇତି ଶ୍ରୀ ଦ୍ୱିତୀୟଗୀତାରସେ ମହାପୁରାଣେ ହରିଅର୍ଜୁନ
ସମ୍ବାଦେ ପାପପୁଣ୍ୟ ମହିମା କଥନେ ନାମ ଅଷ୍ଟମୋଽଧ୍ୟାୟ ।

## ନବମ ଅଧ୍ୟାୟ ।

ଅର୍ଜୁନ ଉବାଚ ।

ଅର୍ଜୁନ ଯୋଡ଼ି ବେନିକର । କୃଷ୍ଣଙ୍କ ବୋଲଇ ଉତ୍ତର
ହେ ପ୍ରଭୁ ପାପ ପୁଣ୍ୟକଥା । ଶୁଣି ତୁଟିଲା ମନୋବ୍ୟଥା
ଏବେ ମୁଁ ପଚାରଇ ତୋତେ । କହ ସୁଦୟା କରି ଚେତେ
ତୁମ୍ଭେ ଯେ ନାଗପୁର ଜଣି । ବିଜୟ କଲଟି କି ପୁଣି
ଆଉ ଦେଖିଲେ ପୁରୀ କିସ । କହ ହେ ପ୍ରଭୁ ପୀତବାସ

ଶ୍ରୀ ଭଗବାନୁବାଚ ।

ବୋଲେ ପରମ ବିଶ୍ୱରୂପୀ । କେତେ କହିବା ତା ସଂକ୍ଷେପି
ଅମ୍ଭେ ସେ ଶବଦ ଶୁଣିଣ । ତକ୍ଷଣେ ଗଲୁ ଉପେକ୍ଷିଣ
ଆଗେ ହୋଇଲେ ବେନିମନ୍ତ୍ରୀ । ମୁନି ମୋ ସଙ୍ଗରେ ଅଛନ୍ତି
ବାସୁକି ବାହାର ବିମାନ । ବେଗେ କି ଚଳଇ ପବନ
କଟକେ ହୋଇଲୁ ପ୍ରବେଶ । ଶୁଣ ହେ ପାର୍ଥ ତା ବିଶେଷ
ସେ ପୁର ମହିମା ଏମନ୍ତ । ଶୁଣିଲେ ହୋଇବୁ ବିସ୍ମିତ
ଚନ୍ଦ୍ରକିରଣ ତହିଁ ନାହିଁ । ଠାଟକା ହୋଇଲି ମୁଁ ଚାହିଁ
ସବୁ ଦିବସ ବାର ନୋହେ । ନିରତେ ସନ୍ଧ୍ୟାକାଳ ପ୍ରାୟେ

ନାଗ ବଲେ ନାହିଁ ବାଟ । ଯେସନେ ଭରିଥାଇ ହାଟ ॥
ଅପୂର୍ବ ଦ୍ରବ୍ୟ ମାନ ଅଛି । ଅମୃତଭୁଲେ ତାକୁ ଲକ୍ଷି ॥
ପଇଡ ପଣସ କଦଳୀ । କେନ୍ଦୁ କଇଥ ବରକୋଳି ॥
ଅମ୍ବ ଦ୍ରାକ୍ଷା ଯେ ଅନୁପମ । କେଉଟ ନାରଙ୍ଗ ଉତ୍ତମ ॥
ଫୁଟି କାକୁଡ ତାଳମଞ୍ଜ । ଆମ୍ବ ଖଣ୍ଡ ଯେ ଖଜା ହେଜ ॥
ଉତ୍ତମ ମିଷ୍ଟ ଶାଳୀ ଅନ୍ନ । ଉତ୍ତମ ଜଡ଼ା ବଡ଼ୀମାନ ॥
କ୍ଷୀର ଝିରିସା ଚକଟଣା । ଏକୁ ଆରେକ ଦ୍ରବ୍ୟ ଛଣା ॥
ନବାତ ଶାକର ଅଟଇ । ଛେନା ଗୋଟିକା ଦୁଧ ଦହି ॥
ଉତ୍ତମ ଚୌକ ତାଦା ବାଢ଼ି । ବସି ଥଛନ୍ତି ଧାଡ଼ ଧାଡ଼ି ॥
ଅଗ୍ନି ଖପର ତାହେଁ ଥୋଇ । ଅବଟ ପଥରେ ଅଛଇ ॥
କେଉଁଠାବରେ ଗଡଦନ୍ତି । କେଉଁ ଠାବରେ ପଞ୍ଚନ୍ତି ॥
ହୀରା ମାଣିକ୍ୟ ମୋତି ମାଳା । ସୁବର୍ଣ୍ଣ ମାରଗ ଯୋଡ଼ିଲା ॥
କଟିନ୍ଧରୁ ଝିନବାସ । ଗନ୍ଧ ଦେଲେ ଦିବ୍ୟବାସ ॥
ଆବର ଦ୍ରବ୍ୟ ଅଛି ଯେତେ । ସଂକ୍ଷେପେ କହିବାକୁ କେତେ ॥
ବହୁତ ମୁଖରଚବାଣୀ । ଶୁଣଇ ସିନ୍ଧୁ ଘୋଷ ଜାଣି ॥
ଦେଖିଣ ନରଧା ପାଇଲେ । ନଳୀମାନଙ୍କୁ ପଚାରିଲେ ॥
ବୋଇଲେ ଅନେମାନ ରଥ । କେବଣ କଟକେ ଏ କଥ ॥
ପଦାର୍ଥମାନ ଦେଖ ହାତେ । କେତେକେତ ବସିଛନ୍ତି ଏତେ ॥
ଶୁଣି ବୋଲନ୍ତି ନଳୀ ବେନି । ଭୋ ଦେବ ଏହୁ ସଂପଦନୀ ॥
ଯମରାଜାର ଏହୁ ରାଷ୍ଟ୍ର । ଅଷ୍ଟଦ୍ୱର୍ଗମ ଏହୁ ବାଟ ॥
ସୁସ୍ୱାଦ ଦ୍ରବ୍ୟମାନ ଧର । ତାହିଁ ଅଛନ୍ତି ଆଗକର ॥
ଆଗ୍ନେ ଯେ ଅଛନ୍ତି ମନୁଷ୍ୟ । ସେ ଯେତେବେଳେ ଯାନ୍ତି ନାଶ ॥
ଧର ଅଣନ୍ତି ଦ୍ରବ୍ୟମାନ । ବାନ୍ଧିଣ ନବଡ଼ ବନ୍ଧନେ ॥
ଯଦ୍ୟପି କରଥାନ୍ତି ପାପ । ଦଣ୍ଡ ଦିଅନ୍ତି ସେ ସ୍ୱରୂପ ॥
ଯାତେ କାମଣ ଯେତେ ପାଇ । ବରନେ ନୁହଇ ତା କହି ॥

ମାରନ୍ତି ଘୋସାରନ୍ତି ଧରି । ଅଗ୍ନି କୁଣ୍ଡରେ ଦ୍ୟନ୍ତି ପୁରି ॥
ଘୋର ଅନ୍ଧାର ପୁରେ ରଖି । ଛଡ଼ନ୍ତି ଜୀବ ଜନ୍ତୁ ଦେଖି ॥
ଯମପୁରେ ରଖିଥାନ୍ତି । ଅନେକ ମାଡ ସେ ମାରନ୍ତି ॥
କରଞ୍ଜ ଦ୍ୱୀପଠାରେ ପୁଣି । ବହୁତ ତପ୍ତ ଏ ଭୂବାଘ ॥
ଥୋଏ ବେଢ଼ଲ ତନ୍ତୁଁ ଅଣି । ଭେଟାନ୍ତି ତପ୍ତ ବୈତରଣୀ ॥
ଖଣ୍ଡିରେ ଦଗଧ ହୋଇଣ । ଛଟକଲେ ରେତୁଥାଏ ପ୍ରାଣ ॥
ତହୁଁ ନଅନ୍ତି ନାଗପୁରେ । ସର୍ପେ ଦଂଶନ୍ତି କୋଟୀଝଟରେ ॥
କ୍ଷୁଧା ତୃଷାରେ ପୀଡ଼ା ପାଇ । କପଟେ ଗୃହି ତ ପାଚନ ॥
ଏଠାରେ ହୋଏ ଯେତେବେଳେ । ଏ ଦୃଶ୍ୟମାନ ଦେଖି ଭୋଳେ ॥
କପଟତ ଗୃହେ ରହିକରି । ବକଲେ ମାଗଇ ସବୁନ୍ତି ॥
ବୋଲଇ ମୋତେ କିଛି ଦଅ । କ୍ଷୁଧାରେ ଆକୁଳ ମୋ ଦେହ ॥
ଶୁଣିଣ ଦୂତନ୍ତି ସଂସ୍ତେ । ଦଅନ୍ତି ନାହିଁ କଦାଚରେ ॥
ଅଗ୍ନି ଝଟେ ଟଙ୍କ କରେ । ନେଇ ଢାଳନ୍ତି ତା ମୁଖରେ ॥
ପଥର ପୋଡ଼ାଇନ୍ତି ଅଗ୍ନେ । ଖାଇ ଚଳଇ ବାଟେ ବାଟେ ॥
ଯତନେ ଭଲ ଦ୍ରବ୍ୟ ଅଣି । ଦେଖାଉଥାନ୍ତି ଅଗେ ପୁଣି ॥
ଘୃତ ତଉଣ କ୍ଷୀର ପିଠା । ଯେଉଁ ଦୋର୍ଣମାନ ମଠା ॥
ଛାଞ୍ଚା ଦେଖାନ୍ତି ଆଣି ପାଶେ । ଲୋଭେ ମାଗଇ ଦୂତ ଅଗେ ॥
ଚଟନ୍ତି ଗୁହାବାଡ଼ ମୁଣ୍ଡେ । ଅନଳ କାହ୍ନିଉନ୍ତି ତୁଣ୍ଡେ ॥
ବୋଲନ୍ତି ଅରେ ମୂଢ଼ ଭୁଦ୍ଧ । ମର୍ତ୍ତ୍ୟରେ ଥିଲୁ ଦେହ ବନ୍ଧ ॥
ହବଧ ଶନୋଦରେ ମାତି । ପାପ ଅଚରୁଥିଲୁ କତି ॥
ଜାଳ ନ ଥିବା ପ୍ରାଣେ ମଣୁ । ମତ୍ତକୁ ବୋଲୁ କି ନଜାଣୁ ॥
ଯେତେ ପଦାର୍ଥ ଅର୍ଜିଥିଲୁ । ଦେବତା ବ୍ରାହ୍ମଣ ନ ଦେଲୁ ॥
ଅତଥିଠାରେ ଅନ୍ନଦାନ । ଦଇଁତ ନ ଦେଲୁ ଏଥାନ ॥
ଏବେ ମାଗୁଛୁ କାହିଁପାଇଁ । ଅଜ ପାଇବୁ ଅନ୍ନ ଖାଉଁ ॥
ଏସନ ବୋଲୁ କଳାହରି । ତହୁଁ ନଅନ୍ତି କେଶଧରି ॥

ପୁଣି ଦେବାଙ୍କ ବସ୍ତ୍ରଦାନ । ଖଦ ପାଟ୍ଟୁଡ଼ା ପାଟ୍ଟା ନୂତନ ॥
ଯାର ପଟଅ ସଫୁଣାଢ଼ୀ । ଦେଖାନ୍ତି ଚଉପାଶେ ବେଢ଼ି ॥
ତାହା ଦେଖିଣ ଜୀବଅଙ୍ଗ । ଦୂତଙ୍କୁ କହଇ ମନସା ॥
ଟୋକଇ ରଖ ବନା ଦଣ୍ଡେ । ଏ ବସ୍ତ୍ର ଦଅ କନା ଖଣ୍ଡେ ॥
ପିନ୍ଧିବ ଭୁମ୍ଭର ପ୍ରସାଦେ । ଉଲଗ୍ନ ହୋଇଅଛୁ ହ୍ରାଦେ ॥
ଏମନ୍ତେ ଯମଦୂତେ ଶୁଣି । ପିଟନ୍ତି କଣ୍ଟାଗୁଟ ଘେନି ॥
ଶୋଣିତ ବହେ ଝର ଝର । କୋପେଣ ବୋଲନ୍ତି ଉତ୍ତର ॥
ମର୍ତ୍ତ୍ୟମଣ୍ଡଳେ ଗୃହ କର । ଥିଲୁ ତୁ କୁଟୁମ୍ବ ଆବୋର ॥
ବସ୍ତ୍ର ଖଣ୍ଡିଏ ଦାନ ଅନ୍ତ । ବ୍ରାହ୍ମଣ ହସ୍ତେ ଦେଇ ନାହୁଁ ॥
ଦରିଦ୍ର ଭିକ୍ଷୁକମାନଙ୍କୁ । କନା ଖଣ୍ଡିଏ ଦେଲେ ତାଙ୍କୁ ॥
ଅମ୍ଭେ ତା ଆଗେ ଆଣିଥାଉଁ । ଏ ପଥେ ଯାତକରୁ ଦେଉଁ ॥
ନୋହିଲେ ପାଇବାକୁ ନାହିଁ । ଏହନ ବୋଲନ୍ତି ଘେନିଯାଇ ॥
ରାଜା ଶ୍ରୁତିର ପରବେଶ । ଆମ୍ଭଙ୍କୁ ଗୃହେ ରବଶିଷ୍ୟ ॥
ତକ୍ଷଣେ ଦେଖୁ ଆତ୍ମ ପାଞ୍ଜି । ଦଣ୍ଡନ୍ତି ପାପ ପୁଣ୍ୟ ବୁଝି ॥
ଯେ ଅବା ବସ୍ତ୍ର ଆଗ୍ରେ କଲ୍ପ । ବିଷ୍ଣୁଚରଣେ ଚିତ୍ତ ଦେଲ୍ପ ॥
ସାଧୁସଙ୍ଗତେ ଚିତ୍ତ ଥିବ । ତିର୍ଥ ନିମରେ ଦାନ ଦେବ ॥
ନଥିଲେ ବହିବ ଆଶାସି । କଣ୍ଠେ ଲଗାଇବ ତୁଳସୀ ॥
ନରଙ୍କେ ସୁମତିବ ଗୀତା । ହୋଇବ ଇନ୍ଦ୍ରପୁର ଛତା ॥
ଏମ ନଣିତ ସବ ଜବ । ହୃଦରେ ହିଂସା ନ ଧରିବ ॥
ଏମନ୍ତ ଭାବେ ଯେଉଁ ପ୍ରାଣୀ । ତରନ୍ତି ଭବତରଙ୍ଗିଣୀ ॥
ଯମଭଗର ତାକୁ ଦେଖି । ପଳାନ୍ତି ଦୂରନ୍ତୁ ଉପେକ୍ଷି ॥
ଶୁଣ ହେ ପ୍ରଭୁ ଦାମୋଦର । ତୁମ୍ଭର ମହିମା ଅପାର ॥
ତାହାଙ୍କ ଉକ୍ତି ଏମା ଶୁଣି । ପ୍ରମାଣ ହୋଇଲେ ଏ ବାଣୀ ॥
ଅର୍ଜୁନ ମୋତେ ଆଶ୍ରେ କର । ମୋ ନାମ ହୃଦପଦ୍ମେ ଧର ॥
ଦଅ ତୁ ଅନ୍ନ ବସ୍ତ୍ରଦାନ । ପାଇବୁ ବଇକୁଣ୍ଠେ ସ୍ଥାନ ॥

ମହାପାପେ ହେଲେ ନ ପାରିବୁ । ଗୀତା ଶୁଣିଲେ ନିସ୍ତରିବ ॥
ଭଣଇ ଦୀନକୃଷ୍ଣ ଦାସ । ହରିପଦରେ ଏହୁ ଶେଷ ॥

ଇତି ଶ୍ରୀ ଦ୍ୱିତୀୟଗୀତାରସେ ମହାପୁରାଣେ ହରିଅର୍ଜ୍ଜୁନ ସମ୍ବାଦେ
ସଂଯମନୀପୁର ପ୍ରସ୍ତାବ କଥନେ ନାମ ନବୋମୋଽଧ୍ୟାୟଃ ।



## ଦଶମ ଅଧ୍ୟାୟ ।

### ଶ୍ରୀ ଭଗବାନୁବାଚ ।

କହନ୍ତି କମଳାପତି ସାଇଁ । ଯେତେ ଦେଖିଲୁ ଆମ୍ଭେ ତହିଁ ॥
କେତେ ଦୂର କହିବା ବଚନେ । ସେଠାରୁ ମିଳିଲୁ ବହନେ ॥
ମିଳିଲୁ ପ୍ରଥମ ଦୁଆରେ । ବୃକ୍ଷେକ ଦେଖିଲୁ ସେଠାରେ ॥
ଶିମିଳୀବୃକ୍ଷ ଗୋଟି ସେହୁ । ମେରୁ ଆକାରେ ଅଛି ରହୁ ॥
ସେ ବୃକ୍ଷ ଉଚ୍ଚ ଶତତାଳ । କୋଶେକ ପ୍ରମାଣ ତା ଡାଳ ॥
ଛତ୍ର ଆକାରେ ପତ୍ର ଗୋଟା । ଦୁଆରେ ସମାନ ତା କଣ୍ଟା ॥
ଗୃରଣ୍ଟ ହାତ ବୃକ୍ଷ ଗୋଟା । ଦିଶଇ ଅତି ତିକ୍ଷ୍ଣ କଣ୍ଟା ॥
ସେ ବୃକ୍ଷ କଣ୍ଟା ଉଭକଣ୍ଠ । ଯୁବତୀ ଗୁନ୍ଥା ହୋଇଛନ୍ତି ॥
ପିଠି କଣ୍ଠକ କଣ୍ଟା ଗଳି । ଡାକନ୍ତି ପଡ଼ୁଛି ବୋବାଳି ॥
ଉଲଗ୍ନ ହୋଇଣ ବଟଶାଖେ । ମରୁଅଛନ୍ତି ଭୋକ ଶୋଷେ ॥
ରାତ୍ର ଦିବସ ହରଘଡ଼ି । ବୃକ୍ଷକୁ ଧରିଛନ୍ତି ଭିଡ଼ି ॥
ଯେ ଅବା ବୃକ୍ଷକୁ ଛାଡ଼ଇ । ତଳକୁ ଲେଉଟି ପଡ଼ଇ ॥
ରହଇ ଊର୍ଦ୍ଧ୍ୱମୁଖ ହୋଇ । ଅଧିକ ବିକଳ କରଇ ॥
ତହିଁ ଅଛନ୍ତି ଯେତେ ନାରୀ । କେତେ କହିବା ନାହିଁ ଧରି ॥
ମୂଳରୁ ଶାଖ ପରଯନ୍ତେ । ନାରୀ ଅଛନ୍ତି ଅପ୍ରମିତେ ॥
ଡାଳ ପଲ୍ଲବ କୋଟି ଭାର । ଅଛନ୍ତି ସବୁଠାରେ ପୂରି ॥
ନଗି ଅଛନ୍ତି ଜଣ ଗୃର । କେ ଜଣ ଲମ୍ବା ବାଡ଼ି ଧରି ॥
ତାହାଙ୍କୁ ପିଟଇ ଜାଠେଇ । ଯେତେ ଦୂରକୁ ହସ୍ତ ପାଇ ॥

ମନ୍ତ୍ର ନ ପାଇ ଯେତେଦୂର । ତାହାଙ୍କୁ ଫିଟାନ୍ତି ପଥର ॥
ପଥର ନାନ୍ତଣ ଯୁବତୀ । ଫୁଲେ ରୋଦନ କରନ୍ତି ॥
ଗହଳ ପ୍ରବଳ ଅନ୍ଧାର । ଏମନ୍ତେ ହୋଇଲୁ ପ୍ରବେଶ ॥
ଦେଖିଣ ସ୍ତମ୍ଭ ହୋଇଲୁ । ମନ୍ତ୍ରୀଙ୍କ ବଚନ ବୋଇଲୁ ॥
ଦେଖ ଏ ବୃକ୍ଷ କେତେ ଉଚ୍ଚ । କଣ୍ଟା ହୋଇଛି କେତେଘଞ୍ଚ ॥
କଣ୍ଟାମାନଙ୍କେ ଗୁନ୍ଥାହୋଇ । ଅବଳାଗଣେ ଛନ୍ତି ରହି ॥
କି ଦୋଷ କଲେ ଏ ଯୁବତୀ । ଏହାଙ୍କୁ ହେଲେ ଏଡ଼େ ଶାସ୍ତି ॥
କହ ହେ ସ୍ୱରୂପ ବଚନ । ଶୁଣିଲେ ପ୍ରତେ ଯିବ ମନ ॥
ବିଶେଷେ ଦେଖନ୍ତି ବିକଟେ । କଣ୍ଟାଙ୍କୁ ମାରନ୍ତି ଗୃଧ୍ରାଳେ ॥
ଅମ୍ବର ଆଜ୍ଞା ପରମାଣେ । କହିଲେ ଯମର ଚରଣେ ॥
ବୋଇଲେ ଶୁଣ ଚନ୍ଦ୍ରବଂଶି । ସଂସାରେ ଯେତେ ଗୃହବାସୀ ॥
ଯେ ଅବା ତାଙ୍କର ଘରଣୀ । ସେହିଷ୍ଟି ଦେଖ ଗୋସାମଣି ।
ଧୂର୍ତ୍ତା ଅନେକ ଦେହବନ୍ଧି । ଭ୍ରମଇ ସ୍ତ୍ରୀ ସ୍ୱରୂପ ହୋଇ ॥
ହେଲେ ପୁରୁଷ ମନ ମୋହି । ଦସ୍ତେକ ପ୍ରେମସୁଖ ଦେଇ ॥
ସୁଖ ଦୁହିତା କରେ ଜାର । ମୁହିଁସ ଲଗାଇ ବହୁତ ॥
ଭୁବନକାତଣୀ ସେ ନାରୀ । ପାପ ପୂର୍ଣ୍ଣରେ ଅଧିକାରୀ ॥
ଯେ ନାରୀ ଗୁପ୍ତ ନିଜ ପତି । ପରପୁରୁଷେ ଦେଇ ମତି
ପରଙ୍କୁ ବଡ ଭଣ ସ୍ନେହ । ଆପଣେ ସମର୍ପଇ ଦେହ ।
ହୋଉଛି ସ୍ତ୍ରୀ ଅଙ୍ଗ ଯୁବତୀ । ତାହାଙ୍କୁ ନାହିଁ ସଦଗତି ॥
ଅନ୍ତେ ବହୁତ ଦୁଃଖ ପାଇ । ଶିମୁଳୀବୃକ୍ଷେ ଗୁନ୍ଥାହୋଇ ।
ନରକେ ପଡନ୍ତି ଅବଶ୍ୟ । ଶୁଣ ହେ ପ୍ରଭୁ ପୀତବାସ ॥
କେ ଅବା ଅପୁତ୍ରିକ ନାରୀ । ଦେଖନ୍ତୁ ଏ ଦଣ୍ଡ ଅତିଶକର ॥
ଯେହୁ କହନ୍ତି ମିଛ କଥା । ଭୁଞ୍ଜନ୍ତି ପଡପୁତ୍ର ମଥା ॥
ସୁଆଗ କମନ୍ତେ ଯୁବତୀ । ସ୍ୱାମୀଙ୍କ ଔଷଧ କରନ୍ତି ॥
ପାତିବ୍ରତ ହୋଇଥିଲେ । ପୁରୁଷମାନଙ୍କ ଛୁଇଁଲେ ।

ସେ ସ୍ତ୍ରୀ ମହାପାପୀ ହୋଇ । ଅନ୍ତେ ଅନେକ ଶାସ୍ତି ପାଇ ।
ଥୋକେ ପାପକୁ ନ ଡରନ୍ତି । ଧାନରେ ଅଗାଡ଼ି ମିଶାନ୍ତି ॥
ଯେ ଅବା ଅନ୍ନ ରାନ୍ଧୁଥାଇ । ମୃଷା ବଚନେ ପେଜ ଦେଇ ।
ମୃଷା କୁଟୁମ୍ବ ମନେ ଯୋଡ଼ି । ସେ ପାପେ କାଳଣୀ ସେ ମୁଢ଼ୀ ॥
ଯେ ଅବା ମନ୍ଦର ଖଞ୍ଜଣ । ପତନେ ଦିଅଇ ଚୂଳିକ ।
ଲକ୍ଷ୍ମୀଙ୍କ ବାରବ୍ରତ ଦିନ । ଯେ ନାନା ଭକ୍ଷେ ଅଣି ମୀନ ॥
ଯେ ଅବା ମନେ ଲୋଭକର । ବସ୍ତ୍ରକାର୍ପାସ ଜଳେ ଗ୍ରେସ ।
ଯେ ଅବା ଯାନ ମାଡ଼ଣ ଦେଇ । ବଡ଼ ମାଣରେ ଦେଉଥାଇ ॥
ଏତେ ପାତକ କରିଥିଲେ । ନରକେ ପଡ଼ଇ ସେ ଭଲେ ॥
ଶିମୁଳବୃକ୍ଷେ ଗୃଧ୍ରା ହୋନ୍ତି । ଯୁଗେକ ଅନ୍ତରେ ଚରନ୍ତି ॥
ନୋହିଲେ ଉଦ୍ଧାର ନାହିଁ । ଶୁଣ ହେ ବ୍ରହ୍ମାସ୍ତ୍ରଗୋସାଇଁ ॥
ଶୁଣି ରହିଲ ତୋଷ ହୋଇ । ତାହାଙ୍କୁ ସାମାନ୍ୟ ନ କହି ॥
ମୋତେ ବୋଇଲେ ସର୍ବ ଗୁଣ । ହେ ପ୍ରଭୁ କର ଶଙ୍ଖଧ୍ୱନି ॥
ତା ରୂପ ନୟନେ ଦେଖନ୍ତୁ । ଅବଳା ଗଣ୍ଡା ନିସ୍ତରନ୍ତୁ ॥
ଶୁଣି ମୁଁ କଲି ଶଙ୍ଖଧ୍ୱନି । ଶବଦ ପୂରିଲା ମେଦିନୀ ॥
ବୃକ୍ଷ ଉପରେ ଥାଇ ନାରୀ । ମୋତେ ଗୃହିଁଲେ ଚକ୍ର କର ॥
ମୋ ରୂପ ନୟନେ ଦେଖିଲେ । ଯମଦଣ୍ଡରୁ ନିସ୍ତରିଲେ ।
ବୃକ୍ଷରୁ ଓହ୍ଲାଇ ପଇଲେ । ମୋ ପାଦେ ଓଳଗି ହୋଇଲେ ॥
ମୋହର ଦେଖୁଁ ୨ ନାରୀ । ତିକ୍ଷଣେ ଗଲେ ସ୍ୱର୍ଗପୁରୀ ॥
ଦେବଙ୍କ ସଙ୍ଗତେ ବସିଲେ । ସକଳ ପାପୁଁ ନିସ୍ତରିଲେ ।
ଶୁଣ ଅର୍ଜୁନ ଏହି ମତେ । ମୋହର ମହିମା ଏସନ ॥
ମୋ ନାମ ଭବଜଳେ ଭେଳା । ମୋ ପାଦେ ଶତ୍ରୁ ତୋର ବଳା ।
ଛାଡ଼ ତୁ ମାୟା ମୋହ ଅଶା । ମୋ ପାଛେ ଅନୁକ୍ଷଣେ ପଶ ॥
ଦୂରିତ ଅବହେଳେ ଯିବ । ଅନ୍ତେ ପାଇବ ସ୍ୱର୍ଗଠାବ ॥
ଏହା ଯେ ପଢ଼ନ୍ତି ଶୁଣନ୍ତି । ଖଣ୍ଡଇ ସକଳ ଦୁର୍ଗତି ।

ଯେ ଏବା ପ୍ରାଣେତ ହୁଅଇ । ତାମର କୁଣ୍ଡବାସ କହ ॥
ପାର୍ଥଙ୍କୁ କହିଲେ ମୁରାରି । ସଭୁର ପଦେ ଏହା ଧର ॥

ଇତି ଶ୍ରୀ ବିଷ୍ଣୁଗୀତାରସେ ମହାପୁରାଣେ କୃଷ୍ଣଅର୍ଜୁନ ସମ୍ବାଦେ
ଶିମୂଳ ବୃକ୍ଷ ମହିମା କଥନେ ନାରକଗଣନିସ୍ତାରଣେ
ନାମ ଦଶମୋଽଧ୍ୟାୟଃ ।



## ଏକାଦଶ ଅଧ୍ୟାୟ ।

### ଶ୍ରୀ ଭଗବାନୁବାଚ ।

ବୋଲନ୍ତି କମଳାରମଣ । ଶୁଣ ଅର୍ଜୁନ ଦେଇ ମନ ॥
ସେଠାରୁ ଗଲୁ ଯାତବାଟର । ପୁଣି ମେଳକୁ ଆନ ଦ୍ୱାରେ ॥
ସେ ଘରେ ଦେଖିଲୁ କଥାଏ । ଶୂଳରେ ବସିଛି ଗୋଟାଏ ॥
ଜଗି ଅଛନ୍ତି ଜଣଦଶେ । ମାଡ ମାରନ୍ତି ଅତି ରୋଷେ ॥
ବେଦନ କରଇ ବକଳେ । ବଶେଷେ ବହିଅଛି ଶୂଳେ ॥
ଅମ୍ଭେ ଦେଖିଲୁ ତାକୁ ଯାଇଁ । ମନ୍ତ୍ରୀଙ୍କି ପଚାରିଲୁ ଯାଇ ॥
ବୋଇଲୁ କେବଣ ଏ ପ୍ରାଣୀ । ଶୂଳେତ ବସାଇଛ ଆଣି ॥
ଏ ପୂର୍ବେ କେଉଁ ଦୋଷ କଲା । କପାଇଁ ଏ ଦଣ୍ଡ ପାଇଲା ॥
ଏ କଥା କହ ସେତକର । ମନ୍ତ୍ରୀ ବୋଇଲା ଶୁଣ ହର ॥
ଜାତିରେ ଶୂଦ୍ର ଏ ଅଟଇ । ମର୍ତ୍ତ୍ୟରେ ଥିଲା ଦେହ ବହି ॥
ଏହାର ନାମ ଦାମୋଦର । କାଉଁରୁ ଦେଶେ ଏହା ଘର ॥
ଯେବଣ କାଳେ ଏହୁ ସାନ । ସ୍ୱଭାବେ ଅଟଇ ଅଜ୍ଞାନ ॥
ସାତବରଷ ହୋଇ ଥିଲା । ପୁତ୍ରଙ୍କ ସଙ୍ଗେ ଖେଳୁଗଲା ॥
ଖେଳୁ ଖେଳନ୍ତେ କୁତୂହଳେ । ସର୍ବନନ୍ଦନ ଏକମେଳେ ॥
ଏ ମୂର୍ଖ ମନ୍ଦକୃତ୍ୟ କଲା । ଝିଣ୍ଟିକା ଗୋଟିଏ ଧଇଲା ॥
କଣ୍ଟା ଗୋଟିଏ ପୋତିଦେଲେ । ତହିଁକୁ ବସାଇଲେ ଶୂଳେ ॥
ସେ ଜୀବ ଗଲା ପ୍ରାଣେ ନାଶ । ତେଣୁ ଲାଗିଲା ଏହାକୁ ଦୋଷ ॥

ଯମେନ୍ଦ୍ର ରବିତନେ ଥିଲେ । ହସ୍ତିକାଳେ ନାରଦଙ୍କ ॥
ଭାରତା ପାଇ ଯମଦୂତ । ବାଛନ୍ତି ଆଣିଲେ ତୁରତେ ॥
ଆମ୍ଭଙ୍କୁ ବୋଇଲେକ ଯମ । କହ ଏହାର ପାପପୁଣ୍ୟ ॥
ଅମ୍ଭେ କହିଲୁ ଯାଞ୍ଚି ଦେଖି । ସକଳ ପାପ ପୁଣ୍ୟ ଲେଖି ॥
ବୋଇଲୁଁ ଶୁଣି ଗୋସାଇଁ । ଏହାର କିଛି ଦୋଷ ନାହିଁ ॥
ଏକ କଥା ଏ କରିଅଛି । ସେ କାଳେ ନ ଜାଣିଣ କିଛି ॥
ବାଳୁତ ବେଳେ ହୋଇଥିଲା । ଟିଣ୍ଟିକା ଦେହେ ଶୂଳ ଦେଲା ॥
ସେ ଜୀବ ମଲା ଅକାରଣେ । ଦୋଷ ଲାଗିଲା ଏହାକୁ ଏଣେ ॥
ଏତେ ମାତ୍ରକ ଏହୁ ଦୋଷୀ । ଯେ ତୁମ୍ଭେ ବିଚାରକୁ ବସି ॥
ଅନେକ ଦାନ ପୁଣ୍ୟ କଲା । ବସ୍ତୁ ସେବଣ ଧନ ନେଲା ॥
ପରେ ଅନ୍ତେ ଉପକାରୀ । ନହିଲେ ହିଂସା ଅଧିକାରୀ ॥
ଅଙ୍କେ ପାଳିଲା ଯାହା । ଯେତେ କହିଲୁ ଅମ୍ଭେ ତାହା ॥
ଯମ ବୋଇଲା ଏହାକୁ ନିଅ । ଗଡ଼ ଦୂତରେ ଶୂଳ ଦିଅ ॥
ପାପ ଅର୍ଜିଲା ଯେତେ ଆଗେ । ସେ ଫଳ ଭୋଗକରୁ ବେଗେ ॥
ଧର୍ମ ଯେ ଅର୍ଜିଅଛି ପଛେ । ସେ ଫଳ ଭୁଞ୍ଜିବ ପ୍ରତ୍ୟକ୍ଷେ ॥
ବରଷେ ବସିଥାଉ ଶୂଳେ । ମୋକ୍ଷ ହୋଇବ ସେତେବେଳେ ॥
ଯମରାଜାର ଆଜ୍ଞା ଶୁଣି । ଏହାକୁ ଦେଲୁ ଶୂଳ ଆଣି ॥
ଖଣ୍ଡିବ ବରଷକେ ଦୋଷ । ଶୁଣ ହେ ପ୍ରଭୁ ପୀତବାସ ॥
ଶୁଣି ମୁଁ ବୋଇଲି ଉତ୍ତର । ଏ ତୁମ୍ଭ କେବଣ ବିଚାର ॥
ସେ ଯେତେବେ ମୋତେ ଆଶ୍ରେ କଲା । ଶକ୍ତି କ୍ରମରେ ଦାନ ଦେଲା ॥
ଅଙ୍କାନେ କଲ୍କିଅନନ୍ତ । ତହିଁକି ନକ ଏଡ଼େ ଶାସ୍ତି ॥
ଆତ୍ମେ ବୋଇଲୁ ଶ୍ରୀହରିଅ । ଦେଖି ବିକଳ ମୋର ଦେହ ॥
ତାହାକୁ କହନ୍ତେ ମୁଁ ଏହା । ଶୁଣିଲା ସେନ୍ତୁ ପୁଣ ଦେହା ॥
ସେ ଭଗ୍ୟବନ୍ତ ମହାଆତ୍ମା । ମୋତେ ଡାକିଲା ଧର୍ମଆତ୍ମା ॥
ଡାକିଲା ଶୂଳେ ବସିଥାଇ । ହେ କୃଷ୍ଣ ମୋତେ କର ସାହି ॥

ବୃତ୍ତ କହନ୍ତେ ଭୁଷଣ୍ଡେ ତାର । ଶୁନକରୁ ହେଲା ସେ ବାହାର ।
ମୋ ପାଦେ କଲା ଦରଶନ । ସ୍ୱର୍ଗରୁ ଆଇଲା ବିମାନ ।।
ପୁଷ୍ପକରଥେ ବସି ଗଲା । ଦେବଙ୍କ ସଙ୍ଗରେ ରହିଲା ।।
ଦେଖିଣ ସନ୍ତୋଷ ହୋଇଲୁଁ । ସେଠାରେ ରଥ ରୁହାଇଲୁଁ ।
ବିମାନ ଉହ୍ଲାଇ ତତକ୍ଷଣ । ବିଜୟ କଲୁଁ ପାଦ ଗତି ।।
ଚିତ୍ରଗୁପ୍ତ ଦ୍ୱାରେ ପରବେଶ । ତହିଁ ଦେଖିଲୁଁ ବଡ଼ ରସ ।।
ସ୍ତ୍ରୀଏ ପୁରୁଷ ବେନି ଜଣ । ନିବଡ଼େ ହୋଇଛନ୍ତି ବନ୍ଧନ ।।
ଦୁଇ ଲୋକଙ୍କ କେଶ ଧରି । ବାନ୍ଧି ଅଛନ୍ତି ଯତ୍ନ କରି ।
ହାତକୁ ହାତ ବନ୍ଧାଇଛି । ପାଦକୁ ପାଦ ଛନ୍ଦାଇଛି ।।
ଚରଣେ ଦଉଡ଼ି ଲଗାଇ । ବୃକ୍ଷେ ଓଲଟ ଛନ୍ତି ନେଇ ।
ମାଂସ କାଟନ୍ତି ଅହନିଶି । ତନୁକୁ କଷ୍ଟହିଁ ନ ଦିଶି ।
ଅନ୍ଧପଟଳ ବାନ୍ଧିଛନ୍ତି । ତେଣୁ ସେ ଲକ୍ଷିଁ ନ ପାରନ୍ତି ।।
ଶୋଣିତ ବହେ ମୁଖ ବାଟେ । ଖଡ଼୍ଗରେ ହାଣୁଛନ୍ତି ଅଣ୍ଟେ ।
ଆକୁଳ କରୁଛନ୍ତି ରଡ । ଅଛନ୍ତି ଯମଦୂତେ ବେଢ଼ି ।
ଅମ୍ଭେ ତା ନୟନେ ଦେଖିଲୁ । ଅଦ୍ଭୁତ ବିକଳ ହୋଇଲୁଁ ।
ବୋଇଲୁ ଚିତ୍ରଗୁପତଙ୍କୁ । କି ଦୋଷେ ଦଣ୍ଡୁଛ ଏହାଙ୍କୁ ।।
ଅନ୍ଧପଟଳ ବାନ୍ଧିକରି । ବୃକ୍ଷେ ଓଲଟି ଅଛ ଧରି ।
କି ପାପ କଲେ ଥିବା କାହିଁ । ଏ ଦଣ୍ଡ ଦେଲ ଜନ୍ମୁ ସାଇଁ ।।
ସ୍ୱରୂପ କରି କହ ମୋତେ । ଯେମନ୍ତେ ଯିବାଇ ପରତେ ।।
ମନ୍ତ୍ରୀ ବୋଇଲେ ଯୋଡ଼ିକର । ଶୁଣ ହେ କମଳାର ବର ।
ଏ ମୂଢ଼ ନବଯୁବା କାଳେ । ପାଟକୁ ନ ଡରିଲା ଟାଳେ ।
ଜାତିରେ ଅଟଇ ଏ ଶୂଦ୍ର । ନାମ ଏହାର ବୀରଭଦ୍ର ।।
ଓଡ଼ୁବକ୍ଷ୍ମରେ ଏହୁ ଥିଲା । ଗର୍ବିତପଣେ ଧନ ନେଲା ।
ପ୍ରଭୁଙ୍କ ନଜରେ ଭଜନ । ନାନା ରସରେ ଦିଏ ମନ ।
ଆପଣା ନଜପରୀ ଛଡ଼ି । ବିଟପିସ୍ତ୍ରୀରେ ଭୁଲେ ପଡ଼ି ।।

ଏ ମୃଢ଼ୀ ପୁରର ଯୁବତୀ । ଶ୍ରୀଧର ବୋଲି ଯାର ପତି ।
ମାଳତୀ ବୋଲି ଏହା ନାମ । ହୃଦେ ନ ଥାଇ ଦୟା ଧର୍ମ ॥
ସେହି ନଗରେ ଏହା ବାସ । ଛଡ଼ିଲା ନିଜ ସ୍ୱାମୀ ଆଶ ॥
ଏହା ସଙ୍ଗରେ ପ୍ରୀତି କଲା । ଯେତେକ ଭାବେ ଦେହ ଦେଲା ॥
ଏମନ୍ତ ଭାବେ କେତେ ଦିନ । କୁଟ୍ଠ ଘାଷିଲେ ବେଦଜନ ।
ଏ କନ୍ୟା ବୋଇଲା ଏହାକୁ । ମାର ତୁ ମୋର ଗୃହସ୍ଥକୁ ॥
ତେବେଟ ତୋର ମୋର ପ୍ରୀତି । କୁଶଳେ ଥିବା ଅମ୍ଭେ ବର୍ତ୍ତି ॥
ଶୁଣି ପୁରୁଷ ତୋଷ ମନ । ସମ୍ମତ କଲାକ ବଚନ ॥
ବୋଇଲା ଶୁଣରେ ଭାବିନୀ । ମାରିବି ଆଜର ରଜନୀ ॥
ଶୟନ ବେଳ ତାର ଜାଣି । ଖଣ୍ଡଗେ ପକାଇବି ହାଣି ॥
ଶୁଣି ସୁନ୍ଦରୀ ପ୍ରେମେ ତୋଷ । ଏମନ୍ତେ ରବି ହେଲା ଶେଷ ॥
ଜଗତେ ଅନ୍ଧାରିଲା ନିଶି । ଶୟନ ବେଳେ ତାର ଅସି ॥
ଖଡଗେ ହାଣିଲାକ ମୁଣ୍ଡ । ଛିଡ ହୋଇଲା ବେନି ଖଣ୍ଡ ॥
ଏ ମୃଢ଼ୀ ମିଛେତକା ପାଢ଼ି । ହୃଦରେ ହୋଇଅଛି କ୍ରୋଧ ॥
ବୋଇଲା ଏ କର୍ମ କେ କଲା । ସ୍ୱାମୀଙ୍କି କେହୁ ମାରଗଲା ॥
ଶୁଣିଣ ସମସ୍ତେ ଧାଇଁଲେ । କି କଥା ବୋଲି ପଚାରିଲେ ॥
ଏ ମୃଢ଼ୀ କହିଲା ତାହାଙ୍କୁ । କେହୁ ମାଇଲା ଗୃହସ୍ଥକୁ ॥
ଲୋକେ ବୋଇଲେ ତାହା ଶୁଣି । କେ ଚୋର ସେ ଗଲା ଯାକୁ ହାଣି ॥
ଶୁଣି ରହିଲା ସ୍ଥିର ହୋଇ । ସ୍ୱାମୀଙ୍କ ଦହନ କରାଇ ॥
ଯାଇଁ ରହିଲା ତାର ପୁରେ । ରମିଲା ପର ପୁରୁଷରେ ॥
ସମସ୍ତେ ଥିଲା ଦେହ ଯେତେ । କାଳେ ଅଇଲା ୧° ଯମଙ୍କ ॥
ବିସ୍ତୁର କଟିଲ ଯମ ଧର୍ମ । ଏ ମୂଢ଼ କରନ୍ତି ଅଧର୍ମ ॥
ଯମ ବୋଇଲେ ଯାକୁ ନେଇ । କର ଚରଣ ବାନ୍ଧିଥାଅ ॥
ତାହାର ନିଦ୍ରା ଯିବା ବେଳେ । ନେଇ ହାଣିବୁ କରବାଲେ ॥
ଦୁହିଁଙ୍କ ଏହାର ନୟନେ । ଅଗ୍ନି ପଟଳ ବାନ୍ଧଜନେ ॥

ଶାଳ୍ମଳ ବୃକ୍ଷେ ଓଲମ୍ବିବ । ଖଡ଼ଗେ ମାଂସ କାଟୁଥିବ ॥
ସେଠାରୁ କେବେ ବରଷକ । ଭୁଞ୍ଜିବ କୁମ୍ଭୀପାକ ନର୍କେ ॥
ରାଜା ବଚନେ ଦୂତେ ନେଲେ । ତେଣୁ କି ଏଦଣ୍ଡ ବହିଲେ ॥
ହୋଇବ ବରଷକେ ମୋକ୍ଷ । ଶୁଣ ହେ ପ୍ରଭୁ ଶ୍ରୀବତ୍ସ ॥
ଏସନ ବୋଲି ମନ୍ତ୍ରୀ କହି । ସେଠାରୁ ଚଳିଲେଁ ପଥ ବହି ॥
ସେ ମୋତେ ଗ୍ରହିଁ ନ ପାରିଲେ । ତେଣୁ କି କୃତାର୍ଥ ନୋହିଲେ ॥
ଚତୁର୍ଥ ଦ୍ୱାରେ ପରବେଶ । ପୁଣିହିଁ ଦେଖିଲେ ଦୃଶ୍ୟ ॥
ବିପ୍ର ଗୋଟାକୁ ତଳେ ପାଡ଼ି । ଭୂମିରେ ବସିଛନ୍ତି ମାଡ଼ି ॥
ତାହାର ମୂର୍ଦ୍ଧାର ଉପରେ । ପିଟୁ ଅଛନ୍ତି ନରନ୍ତରେ ॥
ଜାଳଣି ପ୍ରଚଣ୍ଡ ଅନଳ । ତତାଇ ଲୁହାର ଶାବଳ ॥
ନେଇ ରଖନ୍ତି ବିପ୍ରମୁଖେ । ରୋଦନ କରେ ଅତି ଦୁଃଖେ ॥
ଲୋଚନ ବହେ ଅଶ୍ରୁଜଳ । ଦେହ କମ୍ପୁ ତାହାର ନକଳ ॥
ସେ ଅଗ୍ରୁ କଡ଼ ଆର ପାଶେ । ବସିଛି ଏକଇ ପୁରୁଷେ ॥
ସ୍ତମ୍ଭରେ ବାନ୍ଧିଛନ୍ତି ତେଣେ । ମାଡ଼ ମାରନ୍ତି ଅନୁକ୍ଷଣେ ॥
ନାସିକା ମୁଖ ବୋଇଁ ହୋଇ । ବଚନ ନ ପାରଇ କହି ॥
ବନ୍ଦ ହେ ନିଶ୍ୱାସ ପବନ । ଆକୁଳ ହୋଇଛି ଜୀବନ ॥
କେବଳ ମାତ୍ର ଅଛି ରନ୍ଧ୍ର । ହେତକ ଯାଉଅଛି ବନ୍ଧ ॥
ଦେଖିଲେ ସେ ବେନ ଜନଙ୍କୁ । ଆକୁଳ ହୋଇଲେ ମନକୁ ॥
ବୋଲଇ ଶୁଣି ମନ୍ତ୍ରୀ ବେନି । ତୁମ୍ଭେ ତ ଅଟ ବଡ ଜ୍ଞାନୀ ॥
ମହାଆତ୍ମା ଅଟେ କାର । ବନ୍ଧା ହୋଇଛି ପାଦ କର ॥
ମୁଖ ନାସିକା ବାନ୍ଧି ଅଛି । ଅନେକ ମାଡ଼ହିଁ ମାରୁଛି ॥
ଏ ଅବା କଲା କେଉଁ ଦୋଷ । କହ ହେ ନନ୍ଦନନ୍ଦ ଶେଷ ॥
ସେ ବିପ୍ର ଗୋଟିକୁ ଧରଣ । ମାଡ଼ ମାରୁଛ କି କାରଣ ॥
ନିରୋଧି ଅଛି ତାକୁ ଧରି । ତତାଇ ଲୁହା ମୁଦ୍ଗର ॥
କି ପାପ କଲା ଏହି ଜନ । କହ ଏଥିର ବିବରଣ ॥

ଧାଇଁଲେ ଯେଣ୍ଟା ଅନୁରୂପେ । ମିଳିଲେ ମେଷର ସମୀପେ
କେ ବୋଲେ ଯଷ୍ଟି କରେ ଦେନ । ପିଟିବା ମେଣ୍ଢାର ମୁର୍ଦ୍ଧନ ॥
କେ ବୋଲେ ଖଡ଼ଗେ ହାଣିବା । କେହୁ ବୋଲଇ ନ ଜାଣିମା ॥
କେ ବୋଲେ ଦଉଡ଼ ଲଗାଇ । ବୃକ୍ଷେ ଉଲୁଟ ଦିଅ ନେଇ ॥
ବିପ୍ର କହନ୍ତି ତାକୁ ହେତ । ଭୁଣ୍ଡ ନାସିକା ଧର ବୃନ୍ଦ ।
ମରିବ ନିମିଷ ମାତ୍ରକେ । ଶୁଣି ହସନ୍ତି ସର୍ବ ଲୋକେ ।
ଆପଣେ ହରଷାନ୍ତ ଗଲ । ମେଣ୍ଢାକୁ ମାଡ଼ଣ ବସିଲ ॥
ଗୃହ ଚରଣ ବାନ୍ଧିବାର । ମୁଖ ନାସିକା ବୃନ୍ଦ ଧର ।
ଅଲୁଚ ହୋଇ ମଲା ମେଷ । ବିପ୍ରକୁ ଲାଗିଲାକ ଦୋଷ ।
ବିପ୍ରକୁ ମାଂସ କଟି ଦେଲେ । ବହୁତ ପୁଜାବିଧି କଲେ ।
ବ୍ରାହ୍ମଣ ଗଲା ତହୁଁ ଚଳି । ନିଜ ଅଶ୍ରମେ ଯାଇଁ ମିଳି ॥
ଏମନ୍ତେ କେତେ ଦିନ ଗଲା । ବ୍ରାହ୍ମଣ ପ୍ରାଣତ୍ୟାଗ କଲା ।
ଅଇଲା ସଂଯମନୀପୁର । ଦେଖି ବୋଇଲା ଦାଣ୍ଡକର ॥
ବିପ୍ର ଯେ ମର୍ତ୍ତ୍ୟପୁରେ ଥିଲା । କେଉଁଣ କର୍ମ ଧର୍ମ କଲା ॥
କହ ହେ ମନ୍ତ୍ରୀମାନେ ତୁହି । ଶୁଣି ଦେଖିଲୁ ଆତ୍ମେ ପାଞ୍ଜି ॥
ବୋଇଲୁଁ ଶୁଣ ନରନାଥ । ବ୍ରାହ୍ମଣ ମହା ଭାଗ୍ୟବନ୍ତ ।
ଏକା କଥାଏ କରିଅଛି । କେଣକ ବଧ କରାଇଛି ।
ସେମାନେ ମେଷ ମାରୁଥିଲେ । କି କରି ମାରିବୁ ବୋଇଲେ ।
ତାହାଙ୍କୁ ଦେଲା ଏ ବିଗ୍ରହ । ଭୁଣ୍ଡ ନାସିକା ବୃନ୍ଦ ଧର ।
ଏହାର ତହୁଁ କୋଳ ପାଇ । ଶୁଣି ଗୃଧ୍ରସ୍ତ ତୋଷ ହୋଇ ।
ମେଷକୁ ମାଡ଼ଣ ବସିଲା । ନିବଡ଼ କରଣ ବାନ୍ଧିଲା ॥
ମୁଖ ନାସିକା ବୃନ୍ଦଧର । ଅଲୁଚ ହୋଇ ମେଣ୍ଢାମର ॥
ସେ ଦୋଷ ଏହାକୁ ଲାଗିଲା । ଦେଖିଣ ଯମ କୋପ କଲା ।
ବୋଇଲା ନିଅ ବ୍ରାହ୍ମଣକୁ । ମାଡ଼ଣ ବସିବ ଏହାକୁ ॥
ଲୁହା ଯାବନ ତତାଇବ । କେଇଣ ଭୁଣ୍ଡରେ ଭରିବ ॥

ବ୍ରାହ୍ମଣ ସର୍ବଜ୍ଞାତା ହୋଇ । କପାଁ ଏ ବୁଦ୍ଧି ଦେଲ କହ ॥
ତାହାଙ୍କ ପରାଭବ ପାଇ । ମାସେ ମାସକ ଦୁଃଖ ସହି ॥
ରାଜା ଅଜ୍ଞାରେ ଦୂତ ଆଣି । ଏ ଦଣ୍ଡ ଦେଲେ ତାକୁ ପୁଣି ॥
ଏ ହର ସାଦ୍ଧୁ ମଧ୍ୟେ ଥିଲା । ଥୋକାଏ ହଜେ ନାଚ ଚଳି ॥
ଆପେ ଲେଖିଲା ଜନ୍ମପତ୍ର । ଅମ୍ଭଙ୍କୁ ଗୃହେଁ ଲା ତତ୍ପର ॥
ଆତେମ୍ଭ କହିଲୁ ରାଜା ଅଗେ । ମେଷ ମାଇଲା ଯେଉଁ ଭାଗେ ॥
ଯମ ବୋଇଲେ ଯମ୍ଭାଙ୍କୁ ନଅ । ମୁଖ ନାସିକା ଶିଇଁ ଦଅ ॥
ଯେମନ୍ତେ କଥା ନ କହିବ । ଅଜୁଲ ହୋଇ ମରୁଥିବ ॥
ଶୁଣି ଡଗର ଘେନି ଗଲେ । ଅନେକ ଦଣ୍ଡ ତାକୁ ଦେଲେ ॥
ନାସିକା ମୁଖ ସିଇଁ କରି । ବାନ୍ଧଣ ବସି ଛନ୍ତି ଧରି ॥
ଏ ଯେଣୁ ସ୍ୱହସ୍ତେ ମାଇଲା । ତେଣୁଟି ଏ ଦଣ୍ଡ ପାଇଲା ॥
ଶୁଣ ହେ ପ୍ରଭୁ ନାରାୟଣ । ଏ ବେନି ଜଣଙ୍କର ଗୁଣ ॥
ଅମ୍ଭେ ବୋଇଲୁଁ ତାକୁ ଗୃହେଁ । ଏ କଥା ଘୁର କହୁ ନାହିଁ ॥
ଏ ଯେବେ ନାଶ କଲା ମେଷ । ବରୋଧ କର୍ମକ ଅବଶ୍ୟ ॥
ମାଇଲା କାର୍ଯ୍ୟର ନିମନ୍ତେ । ତାହାଙ୍କ ଶାସ୍ତି ନାହିଁ ଏତେ ॥
ଏ ଦଣ୍ଡ ନୁହଇ ଉଚିତ । ଦଣ୍ଡର ଯା କଲ କୃତାନ୍ତ ॥
ମନ୍ତ୍ରୀ କହିଲେ ତାହା କହୁଁ । ଶୁଣ ହେ ପ୍ରଭୁ ମହାବାହୁ ॥
ସେ ଯେବେ ମାରନ୍ତା ସେ ଜନ୍ତୁ । କପାଇ କଲା ହନୁସନ୍ତୁ ॥
ତୁଣ୍ଡେ ନାସିକା ନରେଟନ୍ତେ । ଛେଳିଗ ଯେନ ପ୍ରହାରନ୍ତେ ॥
ମାତୃହରଣ ଦୋଷ ପାଇ । ଯେଣୁଟି ଶିର ଛେଦ ଯାଇ ॥
ଶୁଣି ମୁଁ କହିଲି ପ୍ରବୋଧି । ନ ଜାଣି କଲା ପାପ ବୁଦ୍ଧି ॥
ତାହାଙ୍କ ପାଇଲା ଏ ଦଣ୍ଡ । ଯେଣୁ ଏହାର ନାସା ତୁଣ୍ଡ ॥
ମୋତେ ଯେ ଦର୍ଶନ ପାଇଲେ । ତେଣୁ ଏ ମୁକତ ହୋଇଲେ ॥
ଏସନ କହନ୍ତେ ମୁଁ ଏଣେ । ବନ୍ଧନ ଫିଟିଲାକ ତେଣେ ॥
ତତକ୍ଷଣେ ଦେବଜନେ ଆସି । ମୋ ପାଦେ ମୂର୍ଦ୍ଧନ ନବେଶି ॥

ଅନେକ ସୁଭ ମୋଟେଭ କର । ତକ୍ଷଣେ ଦିବ୍ୟ ତନୁ ଧର ।।
ସ୍ୱର୍ଗକୁ ଗଲେ ରଥେ ବସି । ଦେବଙ୍କ ସଙ୍ଗେ ଯାଇଁ ମିଶି ।।
ଶୁଣ ଅର୍ଜ୍ଜୁନ ମୋର ବାଣୀ । ଯେତେ ପାତକ କଲେ ପ୍ରାଣୀ ।।
ସେ ଯେବେ ମୋଟେଭ ଅଶେଷକରେ । ଦୁରିତ ଅପଦେହିଲେ ହରେ ।।
ଅନ୍ତେ ପାଅନ୍ତି ସ୍ୱର୍ଗବାସ । ଭଣଇ ଯାନକୃଷ୍ଣ ଦାସ ।।
ମୁଁ ଶ୍ରର ହୋଇ ମର୍ତ୍ତ୍ୟଗାମୀ । କୃଷ୍ଣଙ୍କୁ ନ ପାଇଲି ସେବି ।।
ସ୍ୱପନେ କହିଲେ ଶ୍ରୀଧର । ବୋଇଲେ ଗୀତାଗ୍ରନ୍ଥ କର ।।
ତେଣୁ ମୁଁ ବଖାଣଇ ଗୀତ । ଏ ଅଧ୍ୟା ପଦ ହୁଇଗଲ ।।

ଇତି ଶ୍ରୀ ଦ୍ୱିତୀୟ ଗୀତା ରଚେ ମହାପୁରାଣେ ହରି ଅର୍ଜ୍ଜୁନ ସମ୍ବାଦେ ଯମଦ୍ୱାର କଥନେ ନାମ ଏକାଦଶୋଽଧ୍ୟାୟଃ ।

——ଃ——

## ଦ୍ୱାଦଶ ଅଧ୍ୟାୟ ।

### ଶ୍ରୀ ଭଗବାନୁବାଚ ।

କହନ୍ତି ପ୍ରଭୁ ବାସୁଦେବ । ଏବେ ତୁ ଶୁଣ ହୋ ପାଣ୍ଡବ ।।
ସେଠାରୁ ଗଲୁ ଜୀବ ହୋଇ । ପଥ ମଧ୍ୟରେ ଦେଖିଲୁଁ ଯାଇଁ ।।
ସେଠାରେ ଦେଖିଲୁ ଚିଅ କାଏ । କାହିଁର ହୁଳୁଗ ଗୋଟାଏ ।।
ନଡ଼ଦ୍ଦେ ହୋଇଛି ବନ୍ଦନ । ଆକୁଳେ କରନ୍ତି ରୋଦନ ।।
ବେଢ଼ି ଅଛନ୍ତି ଯମଦୂତେ । ମାଡ଼ ମାରନ୍ତି ଅପ୍ରମିତେ ।।
ପକାନ୍ତି ମୁଣ୍ଡ କାଟି ତାର । ରୁଧିର ବହେ ଝର ଝର ।।
ଲୁଣ ଯେ ଦେଉଛନ୍ତି ଘଷାଇ । ଯାତନେ ବୋଲୁଛନ୍ତି ନେଇ ।।
ଲୁହା ସ୍ତମ୍ଭରେ ବନ୍ଧୁଛନ୍ତି । ଶିର ତ ଦେଖାନ୍ତି କରତ ।।
ମୁଖେ ରୁଧିର ଆସି ପଡ଼ିଛି । ଆକୁଳେ ପ୍ରାଣୀ ଡାକ ପାଡ଼େ ।।
ଦେଖି ମୁଁ ସ୍ତମ୍ଭୀଭୂତ ହୋଇ । ମନ୍ତ୍ରୀଙ୍କୁ ପଚାରିଲି ଗୁହି ।।
ବୋଇଲୁ ଏ କାହିଁର ଜନ । ଦେଖନ୍ତୁ ଏତେ କଷ୍ଟମାନ ।।
କାହାକୁ କଲା ଦ୍ୱେଷ ଦ୍ରୋହ । ସେ କଥା ସତ୍ୟ କରି କହ ।।

ମନ୍ତ୍ରୀ ବୋଇଲେ ଦେବରାଜ । ଭଜାଣ ନାମେ ଦେଶରାଜ୍ୟ ॥
ବିକ୍ରମ କେଶରୀ ବୋଲିଣ । ତହିଁରେ ଅଛେ ନୃପରାଣ ॥
ବିବେକ ସତ୍ୟବ୍ରତ ହୋଇ । ଧର୍ମେ ପାଳଇ ରାଜା ମହୀ ॥
ଶତ୍ରୁ ସଂହାରିଲା ବାହୁବଳେ । ସମାନ ନାହିଁ ତବ ତଳେ ॥
ସମସ୍ତେ ରାଜପଣ କଲା । କାଳେ ସେ ସ୍ୱର୍ଗକୁ ହିଁ ଗଲା ॥
ତାହାର ଏକଇ ନନ୍ଦନ । ରାଜ୍ୟରେ ହୋଇଲା ରାଜନ ॥
ଚନ୍ଦ୍ର କେଶରୀ ବୋଲି ନାମ । ସୁନ୍ଦର ପଟଣ ନାହିଁ କାମ ॥
ବିବିଧ କ୍ରୀଡ଼ାରସେ ମାତି । ଛାପ ଅଗରୁ ଥାଏ ନିତି ॥
ଦିନେକେ ପାଞ୍ଚ ମନ୍ତ୍ରୀ ଘେନି । କଟକେ ବୁଲିଲା ତଜଣି ॥
ବ୍ରାହ୍ମଣ ଝିଅ ନବଯୁବା । ରୂପରେ ସର ନୋହେ ରମ୍ଭା ॥
ଶରଦ ଚନ୍ଦ୍ରମା ବଦନୀ । ଚଞ୍ଚଳ କୁରଙ୍ଗ ନୟନୀ ॥
ଶରୀର ଚମ୍ପା ପୁଷ୍ପ ପ୍ରାୟେ । ଚାହିଁଲେ ଯୁବାଜନ ମୋହେ ॥
ବୃଲ ତା ମଉଗଛ ଜାଣି । ଅଣ୍ଡିର କୋକିଳ ସୁବାଣୀ ॥
ବେନି ଭୁଜ କି ହେମଗତ୍ର । ମୋତି ଦଶନ ବିମ୍ବାଧରୀ ॥
ଦ୍ୱାରେ ହୋଇ ଥିଲା ଉଭା ହୋଇ । ରାଜା ଦେଖିଲା ତାକୁ ଯାଇ ॥
ମଦନେ ବିନ୍ଧାଇଲା ଅସ୍ଥିର । ଯାଇଁ ଧଇଲା କନ୍ୟା କର ॥
ସେ କନ୍ୟା ରୋଦଇ ବିକଳେ । ତୁରିତେ ନେଇଗଲା ବଳେ ॥
ନେଇ ଥୋଇଲା ତାର ପୁରେ । ରମିଲା ତାର ସଙ୍ଗତରେ ॥
ପାପକୁ ନ କଲକ ଭୀତି । ଦୂଷିଲା ବ୍ରାହ୍ମଣ ଯୁବତୀ ॥
ବିପ୍ର ଅଇଲେ ଅତି ଖେଦରେ । ଡକା ପଡ଼ିଲା ସିଂହଦ୍ୱାରେ ॥
ବୋଇଲ ଏ ରାଜ୍ୟେ ନ ଥିବି । ଅନ୍ୟ ରାଜ୍ୟକୁ ବେଗେ ଯିବି ॥
ଏ ପୁରେ ଅନ୍ୟାୟ ହୋଇଲା । ରାଜା ହୋଇଣ ମନ୍ଦ କଲା ॥
ପାପକୁ ନ କଲକ ଭୀତି । ଦୂଷିଲା ବ୍ରାହ୍ମଣ ଯୁବତୀ ॥
ଏମନ୍ତ ବୋଲି ଡାକ ଦେଲା । ଶୁଣି ନୃପତି କୋପ କଲା ॥
ବୋଇଲା ଯାଅ ତାକୁ ଘେନ । ତାଡ଼ି ପକାଅ ଚକ୍ଷୁ ବେନି ॥

ଦେଖ ମୁଁ ରାଜ୍ୟର କଥା । ଅଣିଲ୍ ଏହାର ଦୁହିତା ।
ଏମନ୍ତ ମୋତେ ଗାଳିଦେଲା । ରାଜା ବୋଲନ୍ତି ନ ଉତ୍ତରିଲା ।
ଅଙ୍କ ପ୍ରମାଣେ ନେଲେ ନେଲେ । ନୟନ ଖୋଳ ପକାଇଲେ ।
ବିଅର୍ଥେ ବିପ୍ରଙ୍କୁ ଦଣ୍ଡିଲା । ସେ ଦୋଷ ରାଜାକୁ ଲାଗିଲା ।
ଏମନ୍ତେ ଗଲା କେତେ କାଳ । ମୃତ୍ୟୁ ଲଭିଲା ମହୀପାଳ ।
ଦୂତେ ଅଣିଲେ ଧରି ବେଗେ । ଆସି ମିଳିଲେ ଯମ ଆଗେ ॥
ଆମ୍ଭେ କହିଲୁଁ ଏହା ପାପ । ଶୁଣି ନୃପତି କଲା କୋପ ।
ବୋଇଲା ଦୂତେ ବନ୍ଧ କରି । ଶିର କରକୁ ଥିବ ଧରି ।
ମାଉଁସ କାଟିବ ବକୋଡି । ଅନେକ ଭାଗେ ଦେବ ଶାସ୍ତି ।
ଶତେକ ବରଷ ଜନ୍ତ୍ରରେ । ପକାଅ କ୍ଷାଳାଙ୍ଗ ରକତରେ ।
ନରକେ ପକାଇଣ ଥିବ । ଚଣ୍ଡାଳଘରେ ଜନ୍ମ ଦେବ ॥
ତଥାପି ଅନ୍ଧ ହେବ ଏହି । ତେବେ ପାଇବ ଭଲ ଦେହି ।
ପଛେ ପାଇବ ଭଲଗତି । ହୋଇବ ଅଷ୍ଟାଦଶ ଜାତି ॥
ଅଙ୍କ ପ୍ରମାଣେ ନେଲେ ଦୂତେ । ଏ ଦଣ୍ଡ ବହିଲେ ଭୁଜିତେ ॥
ଶୁଣ ହେ ପ୍ରଭୁ ଭାବଗ୍ରାହୀ । ଦେଖ କେଶରୀ ରାଜା ଏହି ॥
ଶୁଣି ମୁଁ ବୋଇଲି ତାହାକୁ । ଏ ଦଣ୍ଡ ଯୋଗାଏ ଏହାକୁ ।
ସେଠାରୁ ଗଲୁଁ ଅଳ୍ପ ଖରେ । ମିଳିଲୁଁ ଷଷ୍ଠ ଦ୍ୱାରଠାରେ ।
ସେ ଦ୍ୱାରେ ନ ଦେଖିଲୁଁ କିଛି । ବ୍ୟାଘ୍ର ଗୋଟାଏ ଏକା ଅଛି ।
ଯୋଜନ ଅଟେ ତାର କାୟେ । ଦଶଇ ମହାଗିରି ପ୍ରାୟେ ॥
କୋଶେ ପ୍ରମାଣ ତାର ପାଦ । ଦେଖି ମୁଁ ହୋଇଲି ସ୍ତବ୍ଧ ॥
ଉଚ୍ଛେ ଚହ୍ଲଇ ନାଦ କରି । ଦ୍ୱାରକୁ ରହିଛି ଅଗୋରି ॥
ବନ୍ଧା ହୋଇଛି ଲୁହାଫାଶେ । ଯାଇ ହୋଇଲୁଁ ତାର ପାଶେ ।
ଦେଖିଣ ଚକିତ ହୋଇଲୁଁ । ମନ୍ତ୍ରୀମାନଙ୍କୁ ପଚାରିଲୁଁ ॥
ମନ୍ତ୍ରୀ ଜାଣିଲେ ମୋର ମନ । ଆଗତ କହିଲେ ବଚନ ।
ଶୁଣ ହେ ପ୍ରଭୁ ଆଦ୍ୟମୂଳ । ଯମର ପୋଷାଏ ଶାର୍ଦ୍ଦୂଳ ॥

ପାପିଲୋକଙ୍କୁ ଧର ଅଣି । ଢଅନ୍ତ ଏହା ମୁଖେ ପୁଣି ।
ଏହୁ ଯେ ମାଡବାରି କର । ଜଠରେ ପକାଏ ବଦାର ॥
ମରିବା ସାରେ କାମୁଡ଼ଇ । ତଣ୍ଡି ବେକରେ ରକ୍ତ ଖାଇ ॥
ପିଙ୍ଗି ଦେଅଇ କଷ୍ଟ ବଡେ । ପାପଜୀ ଶ୍ରେଦନ କରନ୍ତେ ।
ଯାଇଁ ପଡ଼ଇ କଷ୍ଟ ଦୂରେ । ଦୂରେତ ନଅନ୍ତି ତନ୍ତୁ ଖରେ ॥
କରନ୍ତ ରାଜା ଆଗେ ନେଇ । ଦୋଷବନ୍ତର ଦଣ୍ଡ ଦେଇ ।
ଶୁଣ ହେ ପ୍ରଭୁ ଭକ୍ତ ପାଣି । ଯେ ଅବା ପୁଣ୍ୟବନ୍ତ ପ୍ରାଣୀ ।
ତାହାଙ୍କୁ ନାହିଁ କଷ୍ଟଭୟ । ଏହୁ ଦଶନ୍ତି ଦୂଷା ପ୍ରାୟ ।
ଶୁଣ ମୁଁ ହୋଇଲି ମଗନ । ବୋଇଲ ଶୁଳ ହୋ ବଦନ ॥
ଦଶଇ ମହା ଭୟଙ୍କର । କଳା ମେଘ କ କଳେବର ।
ସୁବର୍ଣ୍ଣମୁକୁଟ ଲଲାଟେ । ମଦାର ମାଳା କଣ୍ଠ ତଟେ ॥
ଅଙ୍ଗ୍ମରତଳେ ମଣ୍ଡ଼ିଛନ୍ତି । ଘଣ୍ଟି ଘାଗୁଡ଼ି ପନ୍ତି ପନ୍ତି ।
ପିଠିରେ ପାଟର ଆସନ । ଦଶଇ ଅତି ଶୋଭାବନ ।
ମନ୍ତ୍ରୀଙ୍କି ପଚ୍ଛିଲି ହରି । ଏପୁଣ କେବଣ ମହିଷୀ ॥
ଅଣ୍ଣ ଥାଇଲା ପ୍ରାୟ ହୋଇ । କପାଇଁ ଦ୍ୱାରେ ଅଛୁ ରହି ।
ମନ୍ତ୍ରୀ ବୋଇଲେ ଭଗବାନ । ଏହା ଯେ ଯମର ବାହନ ।
ଏହାର ପିଠିରେ ଆରୋହି । ଯମ କରନ୍ତି କଟକାଇ ।
ଏହାର ପାଇଁ ଶବ୍ଦା ଛାର । ହସ୍ତୀ ଘୋଡ଼ାକୁ ଅନାଦର ।
ସର୍ବଦା ଏ ଯେ ଏଥି ଥାଇ । ପାପିଙ୍କି ଦେଖିଲେ ମାରଇ ।
ଯମର ଅସ୍ଥାନ ତଳକୁ । ଏ ସାତଦ୍ୱାରେ ଆସିବାକୁ ॥
ଆଜ ଦେଖିବ ଦ୍ୱାର ନାହିଁ । ମିଳିଲୁ ଯମପାରେ ଯାଇଁ ।
ଯମ ଯେ ଆସ୍ଥାନରେ ଥିଲେ । ତଳକୁ ଓହ୍ଲାଇ ଆସିଲେ ।
କୋଟିଏ ରତନ ବସନ । ଥୋଇଣ କଲେ ଦରଶନ ।
ମୋ ପାଦେ କଲ ନମସ୍କାର । ପୁଣି ନମଇ ଶତବାର ।
ବିନୟ ହୋଇଣ ବୋଇଲେ । ମୋହର ପବିତ୍ର ହୋଇଲେ ।

ତହୁଁ ସ୍ତ ଚଳ ଆସ୍ଥାନକୁ । ଶୁଣି ମୁଁ ଗଲି ଉପରକୁ ॥
ବହିଲୁଁ ଯମର ଅସ୍ଥାନେ । ପାଖେ ବସିଲେ ମୁନିମାନେ ॥
ଯମ ବସିଲା କଣ୍ଠଦୂରେ । ଯୋଡ଼ ବୋଇଲା ବେଦାନ୍ତରେ ॥
ଶୁଣ ହେ ପ୍ରଭୁ ଜଗନ୍ନାଥେ । ମୋ ପୁରେ ବିଜୟେ କି ଅର୍ଥେ ॥
ଆମ୍ଭେ ବୋଇଲୁ ତାକୁ ଶୁହିଁ । ଅଇଲୁ ବୈରୁଜ ପାଇଁ ॥
ଗୁରୁଙ୍କ ଷଡପୁତ୍ର ଥିଲେ । ପ୍ରଭାସତୀର୍ଥେ ବୁଡ଼ିମଲେ ॥
ତାଙ୍କୁ ଆଣିଲେ ତୋର ଦୂତେ । ଅଇଲୁ ତହିଁକି ନିମନ୍ତେ ॥
ସେ ଷଡ ପୁତ୍ର ଦିଅ ତୁହି । ମାତାଙ୍କୁ ତୋଷିବାଇ ମୁହିଁ ॥
ଏମନ୍ତ ଶୁଣି ଯମ କହେ । ଏକଥା ଅନନ୍ତବଳେ ନୋହେ ॥
ମରିବା ଲୋକ କାହିଁ ଥିବ । ମନେ ଲାଗିଲା ଅସମ୍ଭବ ॥
ଆଉ ପାଇବା ଆମ୍ଭେ କାହିଁ । ମର୍ତ୍ତ୍ୟଲୋକ ଆସିବ ନାହିଁ ॥
କେବଳ ଆଜ୍ଞାପରମାଣେ । ଦେବାଇ ଷଡ଼ପୁତ୍ର ଏଥିଣି ॥
ଆଗତ କଥା ସବୁ ଜାଣି । ଗୁପତେ ରଖି ଅଛୁ ପୁଣି ॥
ନଅ ଭିତରେ ଷଡଭ୍ରାତ । ଦେଇଗଲା ରାଜା ଜଗନ୍ନାଥ ॥
ଏତେ ବୋଲିଣ ରାଜା ଗଲା । ଗୁରୁଙ୍କ ଷଡ଼ପୁତ୍ର ଦେଲା ॥
ଷଡଭ୍ରାତାଙ୍କୁ ଦେଲା ମୋର । ରତନ ବସ୍ତ୍ର ଅଳଙ୍କାର ॥
ଅନେକ ପୂଜା ବିଧି କଲା । ମୋମନ ସନ୍ତୋଷ ହୋଇଲା ॥
ଯମକୁ ବହୁତ ପ୍ରଶଂସି । ଘଡ଼ିଏ ମାତ୍ର ଥିଲୁ ବସି ॥
ଆସ୍ଥାନ ତଳକୁ ଅଇଲୁ । କୁମ୍ଭେକ ଅଛଇ ଦେଖିଲୁ ॥
ପୂଜ ରକତେ ଅଛୁ ପୂରି । ତହିଁ ପଡ଼ିଛି ଏକ ନାରୀ ॥
ଶୋଣିତ ଖାଉଅଛି ସେହି । ଯମକୁ ପଚାରିଲୁ ରହି ॥
କି ଦୋଷ କଲା ଏ ଯୁବତୀ । କହ ଏଥିର କିସ ଗତି ॥
ଶୁଣି ବୋଇଲା ଯମ ସାଇଁ । ଶୁଣ ହେ ବ୍ରହ୍ମାଣ୍ଡ ଗୋସାଇଁ ॥
ବୈଷ୍ଣବ ଜଣେ ମଧ୍ୟେ ଥିଲା । ପ୍ରଭୁ ହେବାଣ ଧନ ନେଲା ॥
ତାହାର ନାମ ମଧୁଦାସ । ସକାଶ ନଗ୍ରେ ତାର ବାସ ॥

ବଡଇ ଭାଗ୍ୟବନ୍ତ ପ୍ରାଣୀ । ଏ ମୁଣ୍ଡୀ ତାହାର ଘରଣୀ ॥
ମତ୍ସ୍ୟ ମାଂସରେ ତାର ପ୍ରୀତ । ବୈଷ୍ଣବ କରୁଥାଇ ନାସ୍ତି ॥
କାର୍ତ୍ତିକ ଶୁକ୍ଳ ଦଶମୀ । ସେବ୍ରତ କଲା ଏହା ସ୍ୱାମୀ ।
ପୁଣି ସେ ଏକାଦଶୀ ଦିନ । ଜଳହିଁ ନ କଲେକ ପାନ ॥
ଅରଣ୍ୟେ ଘୋର ତପ କରି । ଉନ୍ଧି ଦେ୍ୱ ବଞ୍ଚିଲା ତମିର ॥
ରଜନୀ ପ୍ରଭାତରେ ଗଲା । ଗଙ୍ଗାରେ ସ୍ନାନକୁ ସାରିଲା ॥
ମନ୍ଦିରେ ମିଳିଲେକ ଆସି । ଦ୍ୱାଦଶୀ ପାଳନରେ ବସି ॥
ଏ ମୁଣ୍ଡୀ ଅନ୍ନ ପରଷିଲା । ଆମିଷ ଯତନରେ ଦେଲା ॥
ଅନ୍ନ ଭିତରେ ଥିଲା ଦେଇ । ବୈଷ୍ଣବ ନ ଜାଣି ତା ଖାଇ ॥
ଏହାକୁ ଲାଗିଲେକ ପାପ । ଜାଣି ବୈଷ୍ଣବ କଲା କୋପ ॥
ବୋଲଇ ଅଲୋ ମୁଣ୍ଡୀ ତୁହି । ଏ କର୍ମ କଲୁ କାହିଁପାଇଁ ॥
ଯେବେ ଆମିଷେ ଶ୍ରଦ୍ଧା କଲୁ । ଅପଟଣି କମ୍ପା ନ ଭକ୍ଷିଲୁ ॥
ମୋତେ ଖୁଆଇ ଦେଲୁ ଏହା । ହୋଇଲୁ ମୋହରେ ଦୋରେହା ॥
ଏବେ ତୁ ଶାପ ଘେନ ମୋର । ଯଦ୍ୟପି ଗୃହସ୍ଥ ମୁଁ ତୋର ॥
ମଲେ ଆମିଷ ତୁ ଲୋ ପାଅ । ଯମ ଗୋଡ଼ରୁ ରକ୍ତ ଖାଅ ॥
ଏମନ୍ତ କହି ଶାପ ଦେଲା । ସେ କଥା ଅନ୍ୟଥା ନୋହିଲା ॥
ବୈଷ୍ଣବ ମଲା କେତେଦିନେ । ଯାଇଁ ବସିଲା ସ୍ୱର୍ଗସ୍ଥାନେ ॥
ଏ ମୁଣ୍ଡୀ ମର୍ତ୍ତ୍ୟପୁରେ ଥାଇ । ନାନାକଷ୍ଟରେ ଦିନ ନେଇ ॥
ଯହୁଁ ହୋଇଲା ପ୍ରାଣନାଶ । ଆସି ମିଳିଲା ମୋର ପାଶ ॥
ମୋହର ପାହୁଁ ରକ୍ତ ବହି । ତୁଣ୍ଡେ ପୂରାଇ ଥାଇ ନେଇ ॥
ଏ ମୁଣ୍ଡୀ ଖାଉଥାଇ ବସି । ବରଷେ ହୋଇଲାଣି ଆସି ॥
ଶୁଣି ମୁଁ ହୋଇଲି ବିକଳ । ସେ କନ୍ୟା ଗୃହେଁ ଜଳଜଳ ॥
ଆମ୍ଭେ ଠାଇଁଲୁଁ ହସ୍ତ ଘେନ । ବାହାର ଅସ ଗୋ କାମିନୀ ॥
ଜାଣି ସେ ଅଇଲା ବାହାର । ମୋ ପାଦେ ନମସ୍କାର କରି ॥
ତକ୍ଷଣେ ସ୍ୱର୍ଗେ ଯାଇ ବସି । ଯମ ତା ଦେଖି କରୁ ହସି ॥

ଯମଙ୍କୁ ବୋଇଲୁ ସିଦ୍ଧାନ୍ତ । କମ୍ପାଇଁ ତୋ ପାଦ ଏମନ୍ତ ॥
ଶୋଣିତ ବହୁଛି କମ୍ପାଇଁ । ଏ କଥା କହ ଜଣୁଥାଇଁ ॥
ଶୁଣି ବୋଇଲା ନାଗକର । ମୋହର ପିତା ଦନକର ॥
ଇନ୍ଦ୍ର ସଭାରେ ବସିଥାଇ । ଅମୃତ ଦେଲେ ପଠିଆଇ ॥
ଅମୃତ ଚନ୍ଦ୍ର ଆଣି ଥିଲା । ମାତାଙ୍କ ହସ୍ତେ ଦେଇଗଲା ॥
ତା ମାତା ଯତ୍ନ କରି ଥୋଇ । ମୁହିଁ ଲୋଡିଲି ତାହା ଖାଇ ॥
ଶୁଣି ଜନନୀ ନାସ୍ତି କଲା । ପିଅର ଅସନ୍ତୁ ବୋଇଲା ॥
ମୁହିଁତ ପ୍ରବୋଧ ନ ଗଲି । ଅମୃତ ଉଚ୍ଛୁଡ ଧଇଲି ॥
ସ୍ୱଭାବେ ହାବତ ଜନନୀ । ବିରୋଧ କଲା ହିଂସା ଘେନି ॥
ବେଳଙ୍କୁ ବେଳ କୋପ କଲା । ନାନା ପ୍ରକାଶ ଗାଳି ଦେଲା ॥
ଯହୁଁ ସେ ନ ଦେଲାକ ମତେ । ନେଇ ପ୍ରହାର କଲି ନାତେ ॥
ନାତ ବାଜନ୍ତେ ଦେଲା ଗାଳି । ବୋଇଲା ପାଦ ଯାଉ ମଳି ॥
ମାତାଙ୍କ ତହୁଁ ଶାପ ପାଇ । ଚରଣ ପଡିଛି ମଳାଇ ॥
ପ୍ରାଙ୍ଗଣେ କାନ୍ଦୁଥିଲି ବସି । ପିତା ମିଳିଲେ ଯାତଣ ଅସି ॥
ମୋତେ ସେ ପୁଛିଲେ ସମସ୍ତ । ତୋତେ ଏ କହିଲି ଏମନ୍ତ ॥
କହିଲି ମାତାଙ୍କର ଶାପ । ଶୁଣି ପାଇଲେ ମନେତାପ ॥
ବୋଇଲେ ଆଜଠାରୁ ମାତ୍ର । ଯେ ଅବା ଯାହାରଟି ପୁତ୍ର ॥
ମାତାଙ୍କୁ କରୁଥିଲେ ଅଳି । ମାତାହିଁ ଦେଉଥିବେ ଗାଳି ॥
ପୁତ୍ରଙ୍କୁ ଏମନ୍ତ ପଡିବ । ସଂସାର କେମନ୍ତ ହୋଇବ ॥
ମୋହର ବୋଲ ଏବେ ରହୁ । ମାତାଙ୍କ ଶାପ ମୋତେ ନୋହୁ ॥
କହିଣ ଉତରକୁ ଗଲେ । ମାତାଙ୍କୁ ବହୁତ ଗାଳିଲେ ॥
ତେଣୁ ଟି ମୋପାଦ ଗୋଦରି । ନରକେ ବଟେ ବକ୍ରାଧାରି ॥
ଯହିଁକି ଶୁଣୁଁଥାଇ ବସି । ସେ ଦ୍ରବ୍ୟ ହୋଏ ଉଦ୍ଧାରଣି ॥
ତେଣୁ ପାଦକୁ ଶୁଣୁଥାଇ । ତକ୍ଷଣେ ଜଳଣ ଉଠଇ ॥
ଆର ପାଦକୁ ଦୃଷ୍ଟି ଦେଲେ । ଏ ପାଦ କଅଁଳଇ ଭଲେ ॥

ପ୍ରାଣିଙ୍କ ଆଘାତ କର । ତୋ ଆଜ୍ଞା ଅଛୁ ଶିରେ ଧର ॥
ତୋହର ସ୍ୱରୂପେ ଗୋସାଇଁ । ପ୍ରତିମା ସ୍ଥାପି ଅଛି ମୁହିଁ ॥
ନିତ୍ୟେ କରଇ ଦରଶନ । ଦେଖ ହେ ପ୍ରଭୁ ଭଗବାନ ॥
ଶୁଣି ମୁଁ ତକ୍ଷଣେ ଗୃହିଁଲି । ବିଷ୍ଣୁଙ୍କୁ ଯାଇଣ ଦେଖିଲି ॥
ସେ ମୋତେ ଗୃହିଁଣ ପଚାର । କଂସକୁ ମାଇଲୁକ ହର ॥
ଅମ୍ଭେ ବୋଇଲୁଁ ମଲ୍ଲ କଂସ । ଅବଶ୍ୟ ହୋଇଲା ଉଶ୍ୱାସ ॥
ଏ କଥା ନ ଜାଣିଲେ ଆନ । ଅମ୍ଭେ ଜାଣିଲୁଁ ବେନି ଜଣ ॥
ପୁଣି ଦେଖିଲୁଁ ଦେବକାଶୀ । ପ୍ରତିମା ରୂପେ ଛନ୍ତି ବସି ॥
ତେତିଶ କୋଟି ଦେବତାଏ । ଦେଖିଲୁଁ ଅଛନ୍ତି ଯେଠାଏ ॥
ଅସ୍ଥାନ ଉପର ପାରୁଶେ । ବସିଛି ଏକଇ ପୁରୁଷେ ॥
ବିକଟରୂପ ବପୁଙ୍କର । ନବ ମସ୍ତକ ଷଡ଼କର ॥
ଯମକୁ ପଚାରିଲୁଁ ବାଣୀ । ବୋଇଲୁଁ କିଏ ଏହି ପ୍ରାଣୀ ॥
ଯମ ବୋଇଲା ଏଟି ଜ୍ୱର । ପ୍ରାଣିଙ୍କି ବତଇ ଦୁସ୍ତର ॥
ସମସ୍ତ ଦେଖି ବାହୁଡ଼ିଲୁଁ । ଯମକୁ ଯାଉଛୁ ବୋଇଲୁଁ ॥
ସେ ମୋତେ ହେଲା ପ୍ରଣମିତ । କହିଲା ବଚନ ବହୁତ ॥
ଋଷିମାନଙ୍କୁ କଲା ମାନ୍ୟ । ଦେଲାକ ରତନ ବସନ ॥
ଗୁରୁପୁତ୍ରଙ୍କୁ ଘେନି ସଙ୍ଗେ । ରଥେ ବସିଲୁ ଯାଉଁ ବେଗେ ॥
ଅବର ଷଡ଼ପୁତ୍ର ଘେନି । ଆସି ବସିଲେ ସଙ୍ଗମନ ॥
ରଥ ଚଳଇ ଧାଇଁକାରେ । ଆସି ମିଳିଲୁଁ ସିନ୍ଧୁତୀରେ ॥
ଲକ୍ଷେ ସହସ୍ର ଅଶ୍ୱୋଯୁଣ । ଘଡ଼ିକେ ଅବନ୍ତି ପୁଣ ॥
ଅବନ୍ତୀ ନଗରେ ପ୍ରବେଶ । ମିଳିଲୁଁ ବଳରାମ ପାଶ ॥
ତାହାଙ୍କୁ ନମସ୍କାର କଲୁଁ । ଗୁରୁଙ୍କୁ ଷଡ଼ପୁତ୍ର ଦେଲୁଁ ॥
ମାତାଙ୍କ ପାଶେ ଷଡ଼ପୁତ୍ର । ଦେଖି ଉଲସିତ ତାତ ମାତ ॥
ମେଲାଣି ମାଗିଲୁ ଗୁରୁଙ୍କୁ । ଆଇଲୁଁ ମଥୁରାପୁରକୁ ॥
ଶୁଣ ହେ ବୀରଙ୍କ ଉତ୍ତମ । ଦ୍ୱିତୀୟଗୀତା ଏହା ନାମ ॥

ଏତେ ଯେ କର ବୃତ୍ତାନ୍ତ । ଶ୍ରବଣେ ଶୁଣୁ ଥିବ ନିତ ॥
ସକଳ ଦୁଃଖ ତା ନାଶଇ । ଅନ୍ତରେ ବୈକୁଣ୍ଠେ ବସଇ ॥
ବଡ଼େ ଅଚ୍ୟୁତ ଶିରି ଯଶ । ଭଣେ ନୃସିଂହ ଦାସ ଶିଷ୍ୟ ॥
ଛନ୍ଦେ ମାନର କୃଷ୍ଣ ଦାସ । ଏ ଗୀତ ହେଲା ଏଥିଶେଷ ॥

ଇତି ଶ୍ରୀ ଦ୍ୱିତୀୟ ଗୀତାବଂଶେ ମହାପୁରାଣେ ହରଅର୍ଜୁନ ସମ୍ବାଦେ ଗୁରୁକାମନା ବୋଧନେ ନାମ ଦ୍ୱାଦଶୋଽଧ୍ୟାୟ ।



ସମାପ୍ତ ।

ଶ୍ରୀ ହରନାଥ ପ୍ରେସରେ ଶ୍ରୀ ଅଜୟକୁମାର ଘୋଷଙ୍କଦ୍ୱାରା ମୁଦ୍ରିତ ।

ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକଗୁଡ଼ିକ ଏହି ଠିକଣାରେ ତଲ୍ଲବକଲେ ପାଇ ଯାଇବେ, ଗ୍ରାହକମାନେ ପତ୍ରଦେଲେ ମାଲ ଭିଃ ପିଃ ରେ ପଠାଇଥାଉ, ବିକ୍ରେତାମାନଙ୍କୁ ଆଶାତୀତ କମିଶନ ଦେଉ, ଗ୍ରାହକମାନେ ପତ୍ର ଲେଖିଲେ ନିଜର ନାମ ଓ ବିସ୍ତାରିତ ଠିକଣା ସ୍ପଷ୍ଟଭାବରେ ଲେଖିବାକୁ ଭୁଲିବେ ନାହିଁ ।

ଶ୍ରୀ ଅଶ୍ୱିନୀକୁମାର ଘୋଷ ଏମ, ଏ, ପ୍ରଣୀତ—

| | | |
|---|---|---|
| ସ୍ୱପ୍ନନାଟକ | (ପୌରାଣିକ) | ଟ ୧। |
| ସାବିତ୍ରୀ ନାଟକ | ( „ ) | ଟ ୧। |
| ସେର୍ଜଜ ନାଟକ | [ଐତିହାସିକ] | ଟ ୧୯ |
| ମୁକୁନ୍ଦଦେବ ବା କଳାପାହାଡ଼ ନାଟକ | | ଟ ୧। |
| ଚଳିତ ଯାତ୍ରୀ | (ଉପନ୍ୟାସ) | ଟ ୦।/ |
| ଋଫର୍ମୀ ଲେଡ | ( „ ) | ଟ ୦। |
| ପ୍ରେମିକ ଛନ୍ଦ | ( „ ) | ଟ ୦ ⁄ |
| ବୁଢ଼ାବଛା ଗଳ୍ପ | | ଟ ୦ ⁄ |
| କଥାବଳି ବ୍ୟାଖ୍ୟା | (୧ମ ଓ ୨ୟ) | ଟ ୦ |
| ଚୈତନ୍ୟଚରିତାମୃତ | | ଟ [illegible] |
| ଭୂତଗାଳ | ( „ | ଟ ୦ / |
| ପ୍ରସ୍ତାବିନ୍ଦୁ | | ଟ ୦ ⁄ |

ପୁସ୍ତକ ବିକ୍ରେତା ଗ୍ରାହକମାନେ ବେଶି ପରିମାଣରେ ବହିନେଲେ ଏହି ପୁସ୍ତକଗୁଡ଼ିକରେ ଟ ୧୯ ଠାରୁ ଟ ୦ ୨ କମିଶନ ଦେଇଥାଉ । ଥରେ ପରୀକ୍ଷା ପ୍ରାର୍ଥନୀୟ ।

---

ପୋଃ ଗୃହନୀରୌଢ଼ି
କାଞ୍ଚିବାଦ, କଟକ

ପ୍ରୋପ୍ରା ଇଟର—
ଶ୍ରୀ ଅଜୟକୁମାର ଘୋଷ